ଟାଟା କଂପାନୀକୁ

ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନା ବିକ୍ରୀ

ଓ

ସୁକିନ୍ଦା କ୍ରୋମାଇଟ୍ ଖଣି ଲିଜ୍ ମାମଲା

# କାଠଗଡାରେ

# ବିଜୁ ଓ ଟାଟା କମ୍ପାନୀ

ଏବଂ

- ଭାରତ ସରକାର
- ଓଡ଼ିଶା ସରକାର
- ବେଦ ପ୍ରକାଶ ଅଗ୍ରୱାଲା (ଅର୍ଥମନ୍ତ୍ରୀ)
- ପ୍ରଫୁଲ୍ଲଚନ୍ଦ୍ର ଘଡ଼େଇ
  ସରକାରୀ ଉଦ୍ୟୋଗ ରାଷ୍ଟ୍ରମନ୍ତ୍ରୀ
- ରଷୀମୋଦୀ, ସି.ଏମ୍.ଡି
  ଟାଟାକଂପାନୀ
  ଏବଂ ଅନ୍ୟମାନେ

ଆବେଦନକାରୀ:
**ମାୟାଧର ନାୟକ**
ସଂପାଦକ, ୟୁଟିୟୁସି (ଲେନିନ ସରଣୀ)
ଓଡିଶା ରାଜ୍ୟ କମିଟି,
ସମ୍ପାଦକ ମଣ୍ଡଳୀ ସଦସ୍ୟ,
ଏସୟୁସିଆଇ ଓଡ଼ିଶା ରାଜ୍ୟ କମିଟି

**ବ୍ରାହ୍ମଣୀପାଳ ଚାର୍ଜକ୍ରୋମ ପ୍ରୋଜେକ୍ଟ ୱାର୍କର୍ସ ୟୁନିୟନ**

AHMEDABAD
BANGALORE
BOMBAY
NEW DELHI

INDIA'S BUSINESS

# THE ECONO

# Charge chrome unit: HC issues notices to Tatas, Orissa govt

United News of India
CUTTACK 21 JANUARY

THE ORISSA High Court on Tuesday issued notices returnable within a month to the Centre, the state government, chief minister Biju Patnaik, Mr Russi Mody and others on a public interest writ petition challenging the handover of the public sector undertaking, Baminpal Charge Chrome Plant, to Tata Iron & Steel Co Ltd (TISCO).

A division Bench of the high court, comprising Mr Justice G.B. Patnaik and Mr Justice D.M. Patnaik, fixed March 3 for the hearing of the writ petition, filed by the Socialist Unity Centre of India (SUCI) leader, Mr Mayadhar Nayak.

Mr Nayak sought a stay on the operation of the agreement signed between TISCO and the state government, on handing over of the fully export-oriented charge chrome plant, and an injunction on both central and state governments for granting approval or permission for the renewal of the chromite mine lease in favour of TISCO.

The division Bench declined to issue the injunction.

However, the Bench stated that the approval and renewal of the lease in favour of TISCO would be subjected to the final disposal of the writ petition.

Mr Nayak alleged that the state government had acted "irrationally, illegally and arbitrarily" while selling the charge chrome plant to TISCO.

The transaction had been made to renew the lease of the entire chromite mines in favour of the private sector undertaking on extraneous considerations, he added.

The petitioner further alleged that the sale of the charge chrome plant in the absence of expert opinion led to the conclusion that the deal was "rushed through in a most clandestine manner".

Mr Nayak also said that no global tender was invited for the sale of the charge chrome plant which would have brought in bidders from all over the world.

The state government, by agreeing to the renewal of the lease of the chromite mines in favour of TISCO, had sacrificed the interest of the state and caused leakages in revenue and loss to the state exchequer, he said.

Mr Nayak, who is facing a Rs 1-crore defamation case filed by TISCO in the Bombay High Court for alleging that the Orissa chief minister had entered into a "corrupt deal" with the Tatas for the sale of the charge chrome plant, run by Orissa Mining Corporation (OMC), recently issued a statement that he would not contest the defamation suit and was even prepared to go to jail.

Meanwhile, another public interest writ petition case has been filed by the former state revenue minister, Mr Bhagabat Prasad Mahanty, seeking judicial redress in the matter of transfer of the charge chrome plant to the private sector undertaking.

Mr Mahanty alleged that the charge chrome plant, the biggest in Asia, had been transferred to the private sector undertaking without the prior approval of the Industrial Development Bank of India (IDBI) which, while sanctioning a term loan of Rs 11.6 crore to the chrome ore beneficiation project, stipulated that the OMC could not undertake any merger proposal without its permission.

While challenging the "executive excesses" of the state and chief minister Patnaik in the disposal of the charge chrome plant, Mr Mahanty alleged that the norms set by judicial pronouncements were not followed when the charge chrome plant was transferred to TISCO.

He said that the "legal opinion was twisted at the behest of Biju Patnaik", who "struck" a private bargain to privatise the Rs 500-crore plant without resorting to the accepted norms of disposal of public property.

Mr Mahanty said that as the terms and advantages conceded by the state government to TISCO were never extended to the OMC, the government's action was grossly discriminatory and, therefore, liable to be struck down.

# The...

## Orissa dea... Tisco chal...

Cuttack, Jan.21 (PTI): A division bench of the Orissa high court today issued notices on the question of admission and hearing of a public interest writ petition challenging the recent transfer of the charge chrome plant of the public sector Orissa Mining Corporation to the Tata Iron and Steel Company (Tisco).

The division bench, comprising Justice G.B. Patnaik and Justice D.M. Patnaik, after hearing the counsel for the petitioner, directed that the notices be issued to the opposite parties by registered post returnable within four weeks and the case be listed on March 3 for fixing a date of hearing.

The court rejected the plea of the counsel, Mr Prabir Palit, for stay of the transaction as the same had already become operative. It also refused to issue any injunction on the Union and state governments on the question of approval and renewal of the mining lease in respect of chromite mines as sought by Tisco. However, it said that the approval and renewal of the mining lease in favour of Tisco would be subject to the court's final decision on the writ application.

The petition was filed by Mr Mayadhar Nayak, a prominent

THE OBSERVER
THE NEWSPAPER FOR BUSINESS
WEDNESDAY JANUARY 22 1992

## Orissa move on Baminpal plant challenged

United News of India
CUTTACK

THE Orissa government's decision to hand over its fully export-oriented Baminpal charge chrome plant, considered to be the biggest in Asia, to a private sector company was challenged in the Orissa High Court on Tuesday through a public interest petition.

The court issued notices returnable within a month to the Centre, the state government, chief minister Biju Patnaik, Mr Russi Mody and others challenging the decision to hand over the charge chrome plant to the Tata Iron and Steel Company Ltd (TISCO).

A division bench of the court consisting of Justice G B Patnaik and Justice D M Patnaik fixed March 3, for hearing of the writ petition filed by Socialist Unity Centre of India (SUI) leader Mayadharnayak, seeking a stay on the operation of the agreement signed between TISCO and the state government.

The petition also pleaded for an injunction on both the Central and state governments on granting permission for the renewal of the chromite mine lease favour of TISCO.

The court declined to issue the injunction but stated that the approval and renewal of the lease in favour of TISCO would be subjected to the final disposal of the petition.

Mr Nayak alleged that the state government had acted irrationally, illegally and arbitrarily while selling the charge chrome plant to TISCO. The entire transaction had been made with a view to renew the lease of the entire chromite mines in favour of the private sector undertakings for extraneous consideration, he added

Mr Nayak also stated that no global tender was invited for the sale of the charge chrome plant. The state government by agreeing to renewal of the chromite mines lease in favour of TISCO, had sacrificed the interest of the state and caused leakages in revenue and loss to the state exchequer, he said.

## ପ୍ରାକ୍ ସୂଚନା-:

ଜାନୁଆରୀ ୨୦,୧୯୯୨ରେ ଓଡ଼ିଶା ହାଇକୋର୍ଟରେ ଏସ.ୟୁ.ସି.ଆଇ ନେତା ତଥା ୟୁ.ଟି.ୟୁ.ସି (ଲେନିନ ସରଣୀ) ରାଜ୍ୟ ସଂପାଦକ ଶ୍ରୀ ମାୟାଧର ନାୟକ ଦେଶର ଏକମାତ୍ର ରପ୍ତାନୀ ଭିତ୍ତିକ ସରକାରୀ ଉଦ୍ୟୋଗରେ ପରିଚାଳିତ ବାହ୍ମଣୀପାଳ ଚାର୍ଜକ୍ରୋମ କାରଖାନାକୁ ଟାଟା କଂପାନୀକୁ ବିକ୍ରୀ ବିରୁଦ୍ଧରେ ଏକ ଜନ ସ୍ୱାର୍ଥ ମାମଲା ଓଡ଼ିଶା ହାଇକୋର୍ଟରେ ଦାଏର କରିଛନ୍ତି। ଶ୍ରୀ ନାୟକଂକ ପକ୍ଷରୁ ଓଡ଼ିଶା ହାଇକୋର୍ଟରେ ପ୍ରଖ୍ୟାତ୍ ଆଡ୍‌ଭୋକେଟ ଶ୍ରୀଯୁକ୍ତ ପ୍ରବୀର ପାଲିତ, ଶ୍ରୀଯୁକ୍ତ ବିଜୟ ପାଲ, ଶ୍ରୀଯୁକ୍ତ ରମାକାନ୍ତ ମହାପାତ୍ର, ଶ୍ରୀ ଯୁକ୍ତ ଦେବେନ୍ଦ୍ର ମହାନ୍ତ, ଶ୍ରୀଯୁକ୍ତ ଡ଼ି. ଧଳ ସାମନ୍ତ, ଶ୍ରୀଯୁକ୍ତ ଆଦିତ୍ୟ ପଟ୍ଟନାୟକ, ଶ୍ରୀ ଯୁକ୍ତ ଏସ.କେ. ଶତପଥୀ, ଶ୍ରୀ ଯୁକ୍ତ କି.ଏସ୍. ନାମ କୁମାର ପ୍ରମୁଖ ଓ ରାଜ୍ୟ ସରକାରଂକ ପକ୍ଷରୁ ଆଡ୍‌ଭୋକେଟ ଜେନେରାଲ ଶ୍ରୀଯୁକ୍ତ **ଶୋଭେସ୍ ରାୟ** ମୋକଦ୍ଦମା ଲଢୁଛନ୍ତି। ଏହି ମୋକଦ୍ଦମା ରେ ମୁଖ୍ୟମନ୍ତ୍ରୀ **ଶ୍ରୀଯୁକ୍ତ** ବିଜୁ ପଟ୍ଟନାୟକ, କେନ୍ଦ୍ର ଇସ୍ପାତ୍ ଓ ଖଣି ବିଭାଗ ସଚୀବ, ରାଜ୍ୟ ମୁଖ୍ୟ ସଚୀବ, ମୁଖ୍ୟ ସଚୀବ ଇସ୍ପାତ ଓ ଖଣି ବିଭାଗ, ମୁଖ୍ୟ ସଚୀବ ଅର୍ଥ ବିଭାଗ, ସଚୀବ ସରକାରୀ ଉଦ୍ୟୋଗ, ସଚୀବ ଆଇନ ବିଭାଗ, ସି.ଏମ୍.ଡ଼ି. ରାଜ୍ୟ ଖଣି ନିଗମ, ଅର୍ଥମନ୍ତ୍ରୀ ଶ୍ରୀ ଯୁକ୍ତ ବେଦ ପ୍ରକାଶ ଅଗ୍ରୱାଲା, ସରକାରୀ ଉଦ୍ୟୋଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ସି.ଏମ୍.ଡ଼ି. ଟାଟା କଂପାନୀ, ଶ୍ରୀ ଋଷି ମୋଦୀ ସି.ଏମ୍.ଡ଼ି. ଟିସ୍କୋ, ଶ୍ରୀ ଏ. କାଶ୍ୟପ, ଶ୍ରୀ ଏନ୍. ପଟ୍ଟନାୟକ, ଶ୍ରୀ ଜେ.ଜେ. ଇରାନି, ଶ୍ରୀ ଏଚ୍.ପି. ମହାପାତ୍ର, ଶ୍ରୀ କେ.ସି. ହୋତା ପ୍ରମୁଖ ୧୯ ଜଣ ଅଭିଯୁକ୍ତ ହୋଇଛନ୍ତି। ଏହି ମୋକଦ୍ଦମା ମାନ୍ୟବର ବିଚାରପତି ଶ୍ରୀ ଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକ ଓ ମାନ୍ୟବର ବିଚାରପତି ଶ୍ରୀଯୁକ୍ତ ଡ଼ି.ଏମ୍. ପଟ୍ଟନାୟକଙ୍କ ଇଜଲାସରେ ଆଗାମୀ ମାର୍ଚ୍ଚ ୩ ତାରିଖରେ ପରବର୍ତ୍ତୀ ଶୁଣାଣୀ ସକାଶେ ଗୃହୀତ ହୋଇଛି ଓ ଏଥିପାଇଁ ପ୍ରତିବାଦୀମାନଂକୁ ନୋଟିସ୍ ଜାରୀ ହୋଇଛି।

## ରିଟ୍‌ର ମୁଖ୍ୟାଂଶ-:

୧୯୮୧ ମସିହାରେ ରାଜ୍ୟ ସରକାର କେଉଁଝର ଜିଲ୍ଲାର ବ୍ରାହ୍ମଣୀ ପାଳ ଠାରେ ଓଡ଼ିଶା ଖଣି ନିଗମ ଅଧୀନରେ ଏକ ଚାର୍ଜକ୍ରୋମ କାରଖାନା ପ୍ରତିଷ୍ଠା କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ। ପ୍ରଥମେ ଏଥି ସକାଶେ ୨୮ କୋଟି ୬୨ ଲକ୍ଷ ଟଂକା ଖର୍ଚ୍ଚ ଅଟକଳ ହୋଇଥିଲା। ମାତ୍ର ୧୯୮୧ ଜୁନ୍‌ରେ ଏହି ଅଟକଳ ବଢ଼ିଯାଇ ୩୪ କୋଟି ୫୬ ଲକ୍ଷ ଟଂକାରେ ପହଞ୍ଚିଲା। କିଂତୁ ପ୍ରକଳ୍ପଟି ପୂର୍ଣ୍ଣାଙ୍ଗ ହେଲା ବେଳକୁ ୫୯ କୋଟି ୮୦ ଲକ୍ଷ ଟଂକା ବ୍ୟୟ ହୋଇ ଥିଲା। ଏଠାରେ ସୂଚନାଯୋଗ୍ୟଯେ ଯଦିଓ ଏହି କାରଖାନା ସରକାରୀ ଉଦ୍ୟୋଗ ଭାବେ ପ୍ରତିଷ୍ଠିତ ହୋଇଥିଲା, ତଥାପି ରାଜ୍ୟ ସରକାରଂକ ରାଜନୈତିକ ନିଷ୍ଠାର ଅଭାବ ଯୋଗୁ କାରଖାନା ପୂର୍ଣ୍ଣାଙ୍ଗ ହେବାରେ ଅଯଥା ବିଳମ୍ବ ଘଟିଥିଲା। ଏଥି ସକାଶେ କାରଖାନା ପ୍ରତିଷ୍ଠା ଖର୍ଚ୍ଚ ପ୍ରାୟ ଦୁଇଗୁଣ ହୋଇଥିଲା। ଏକଥା ମଧ୍ୟ ଉଲ୍ଲେଖ ଯୋଗ୍ୟ ଯେ ସେତେବେଳେ ଅନ୍ୟାନ୍ୟ ଚାର୍ଜକ୍ରୋମ

ଉତ୍ପାଦନକାରୀ ଘରୋଇ ମାଲିକମାନେ ଚାର୍ଜକ୍ରୋମର ଚଢ଼ା ବିଶ୍ୱ ବଜାରଦର ଯୋଗୁ ପର୍ଯ୍ୟାପ୍ତ ଲାଭ କରିଥିଲେ। ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନା ଯଦି ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ସଂପୂର୍ଣ୍ଣ ହୋଇ ପାରିଥାନ୍ତା ତେବେ ରାଜ୍ୟସରକାର ମଧ୍ୟ ଅନୁରୂପ ଲାଭ କରି ପାରିଥାନ୍ତେ। ତଦାନୀନ୍ତନ ସରକାରଂକ ଘରୋଇ ଶିଳ୍ପପତିଙ୍କ ପ୍ରତି ପ୍ରୀତି ଯୋଗୁ ହେଉ ଅଥବା ନିଜର ଚୂଡ଼ାନ୍ତ ଅକ୍ଷମତା ଯୋଗୁ ହେଉ ଏହି କାରଖାନା ପ୍ରତିଷ୍ଠା କାର୍ଯ୍ୟ ସଂପୂର୍ଣ୍ଣ ହେବାରେ ବିଳମ୍ବ ଘଟିବାରୁ ବିଶ୍ୱ ଅନୁକୂଳ ବଜାର ପରିସ୍ଥିତିର ସୁଯୋଗ ହରାଇଥିଲେ।

ସମସ୍ତେ ଜାଣନ୍ତି ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନା ସଂପୂର୍ଣ୍ଣ ରପ୍ତାନି ଭିତିକ ଓ ଏହା ବିଦେଶୀ ମୁଦ୍ରା ଅର୍ଜନର ଏକ ମାଧ୍ୟମ। କିଂତୁ ତଦାନୀନ୍ତନ କଂଗ୍ରେସ(ଇ) ରାଜ୍ୟ ସରକାରଂକ ଅଯୋଗ୍ୟତା ସରକାରୀ ଉଚ୍ଚ କର୍ତ୍ତୃପକ୍ଷଙ୍କ ଅଯୋଗ୍ୟତା ଯୋଗୁ ଚାର୍ଜକ୍ରୋମ ପ୍ରତିଷ୍ଠା ଦିନରୁ ଆଶାନୁରୂପକ ସୁଫଳ ମିଳି ପାରିଲା ନାହିଁ। ଏହା କ୍ରମାଗତ କ୍ଷତିରେ ଚାଲିଛି ବୋଲି ସରକାର ପ୍ରଚାର କଲେ। ଅଥଚ ରାଜ୍ୟ ସରକାର କାରଖାନାକୁ କ୍ଷତିରୁ ରକ୍ଷା କରିବା ସକାଶେ ଓ ପରିଚାଳନାଗତ ଦକ୍ଷତା ବୃଦ୍ଧି ସକାଶେ କୌଣସି ସୁଚିନ୍ତିତ ଉଦ୍ୟମ ଗ୍ରହଣ କଲେ ନାହିଁ। ଅନ୍ୟପକ୍ଷରେ ବିଶ୍ୱ ବଜାରରେ ସାମୟିକ ଭାବେ ଚାର୍ଜକ୍ରୋମର ମୂଲ୍ୟହ୍ରାସ, କାରଖାନାର ଉତ୍ପାଦନ ହ୍ରାସ, କ୍ରମାଗତ ବିଦ୍ୟୁତ୍ ସଂକଟ ଯୋଗୁ କାରଖାନାର କ୍ଷତି ବଢ଼ିବାକୁ ଲାଗିଲା। ଏହା ଯୋଗୁଁ ମାର୍ଚ୍ଚ ୩୧,୧୯୯୧ ମସିହା ବେଳକୁ ଏହି କାରଖାନାର ନିଟ୍ କ୍ଷତି ୩୯ କୋଟି ୩୩ ଲକ୍ଷରେ ପହଞ୍ଚିଲା ଓ ୧୯୯୧-୯୨ ଆର୍ଥିକ ବର୍ଷରେ ଏହି କ୍ଷତିର ପରିମାଣ ୧୦ କୋଟି ୯୩ ଲକ୍ଷ ଟଂକା। ଅବଶ୍ୟ ଏଠାରେ ଉଲ୍ଲେଖନୀୟ ଯେ ଏହି କ୍ଷତି ସଂପର୍କରେ ସଠିକ ଆୟବ୍ୟୟ ବିବରଣୀ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇ ନାହିଁ। କିଂତୁ ଯଦି ବି ଏହା ସତ୍ୟ ହୋଇଥାଏ, ତେବେ ଏହି କ୍ଷତି ବିଧି ନିର୍ଦ୍ଧାରିତ ନଥିଲା। ରାଜନୈତିକ କାରଣ ଓ ପ୍ରଶାସନିକ ଅକ୍ଷମତା ହିଁ ଏହି କ୍ଷତିପାଇଁ ଦାୟୀ।(Para -5,6,7)

## ସରକାର ପରିବର୍ତ୍ତନ ଓ ବିଜୁବାବୁଙ୍କ ଶାସନ-:

ଦୀର୍ଘ କଂଗ୍ରେସ-ଇ ଶାସନର ଦୁର୍ନୀତି, ଜନ ବିରୋଧୀ ନୀତି ବିରୁଦ୍ଧରେ ଦେଶବାସୀ ଏକ ଅଭୂତପୂର୍ବ ରାୟ ଦେଇଥିଲେ ଓ କେନ୍ଦ୍ରରେ ଜନତାଦଳ ଏବଂ ଏହାର ସହଯୋଗୀ ଦଳମାନେ କ୍ଷମତାକୁ ଆସିଥିଲେ। ଏହି ଧାରାରେ ଓଡ଼ିଶାର ସ୍ୱାଭିମାନ ପ୍ରଶ୍ନ ଉଠାଇ, ସୁନାର ଓଡ଼ିଶା ଗଠନ, ନୂତନ ଓଡ଼ିଶା ନିର୍ମାଣ ଇତ୍ୟାଦି ତୁମ୍ବୀ ତୋଫାନ କରି ବିଜୁବାବୁ ପୁଣି ୨୭ ବର୍ଷର ବ୍ୟବଧାନ ପରେ ୧୯୯୦ ମସିହାରେ ମୁଖ୍ୟମନ୍ତ୍ରୀ ହେଲେ। ଜନସାଧାରଣ ଭାବିଥିଲେ ଯେ ରାଜ୍ୟର ଅର୍ଥନୈତିକ ବିକାଶ କ୍ଷେତ୍ରରେ ଏକ ଗୁରୁତ୍ୱ ପୂର୍ଣ୍ଣ ପରିବର୍ତ୍ତନ ହେବ। ବିଶେଷ କରି ପ୍ରାକୃତିକ ସଂପଦରେ ଭରପୂର ଆମରାଜ୍ୟକୁ ଯେଭଳି ବୃହତ ପୁଞ୍ଜିପତିମାନେ ଲୁଟି ଚାଲିଛନ୍ତି ସେଥିରୁ ରାଜ୍ୟବାସୀ ମୁକ୍ତ ହେବେ ଓ ରାଜ୍ୟର ଖଣିଜ, ବନଜ ଓ ଜଳଦ ସଂପଦକୁ ବିନିଯୋଗ କରି ରାଜ୍ୟର ଦ୍ରୁତ ଶିଳ୍ପାୟନ ଜରିଆରେ ବ୍ୟାପକ ବେକାର ଜନଶକ୍ତି କର୍ମ ନିଯୁକ୍ତି ପାଇବେ।

କିଂନ୍ତୁ ବିଜୁବାବୁ କ୍ଷମତା ହାସଲ କରିବା ପରେ ରଜ୍ୟର ଦ୍ରୁତ ଶିଳ୍ପାୟନ ଘଟାଇବା ଓ ରୁଗ୍ଣ ଶିଳ୍ପ ଗୁଡ଼ିକୁ ପୁନରୁଦ୍ଧାର କରିବା ଦୂରେଥାଉ ବରଂ ସର୍ବ ପ୍ରଥମ ଆକ୍ରମଣ କଲେ ସରକାରୀ ଶିଳ୍ପ ଉପରେ। ପ୍ରଥମେ ବଡ଼ମ୍ବା ଓ ନୟାଗଡ଼ ସମବାୟ ଚିନିଶିଳ୍ପକୁ ଦକ୍ଷିଣ ଭାରତର ଶକ୍ତି ଓ ଧରଣୀ ସୁଗାର କଂପାନୀକୁ ବିକ୍ରୀ କରିଦେଲେ। ଯେଉଁ ବିଜୁବାବୁ ଓଡ଼ିଶାର ସ୍ୱାଭିମାନ ପ୍ରଶ୍ନକୁ ତାଂକର ସମଗ୍ର ରାଜନୈତିକ ଜୀବନର ଏକମାତ୍ର ଆୟୁଧ କରିଛନ୍ତି, ସେହି ବିଜୁବାବୁଙ୍କ ପୌରୋହିତ୍ୟରେଓଡ଼ିଶାର କଳ କାରଖାନାସବୁ ରାଜ୍ୟ ବାହାରର ଶିଳ୍ପପତିମାନଂକୁ ବିକ୍ରୀ ହେବା ଆରମ୍ଭ ହେଲା। ଏହି ସବୁ ବିକ୍ରୀ ବିରୁଦ୍ଧରେ ଜନମତକୁ ସେ ଉପେକ୍ଷା କରି ଚାଲିଲେ। ଏପରିକି ନିଜ ଦଳର କେତେକ ତୁଙ୍ଗ ନେତାଙ୍କ ମତକୁ ମଧ୍ୟ ସେ ଖାତିର କଲେ ନାହିଁ। ଏକଦା କଂଗ୍ରେସ(ଇ) ଦଳର ଜଣେ ପଦଲେହନ କାରୀ ନେତା ଯେପରି କହିଥିଲେ, ଇନ୍ଦିରା ହିଁ ଇଣ୍ଡିଆ, ସେହିପରି ବିଜୁବାବୁ ବୋଧେ ବିଚାର କରୁଛନ୍ତି ସେ ଯାହା କିଛି କରୁଛନ୍ତି ତାହାହିଁ ଓଡ଼ିଶାର ସ୍ୱାର୍ଥ।

## ଚାର୍ଜକ୍ରୋମ କାରଖାନା ବିକ୍ରୀର ଆଦ୍ୟପର୍ବ-:

ଜନସାଧାରଣଙ୍କ ସ୍ମୃତିଶକ୍ତି ଯେତେ କ୍ଷୀଣ ହେଲେ ବି ଏ ପର୍ଯ୍ୟନ୍ତ ଭୁଲି ନଥିବେ ଯେ ୧୯୭୭ ମସିହା ତଦାନ୍ୟନ୍ତନ ଜନତାଦଳ ସରକାର ବେଳେ କେନ୍ଦ୍ର ଇସ୍ପାତ ଓ ଖଣି ମନ୍ତ୍ରୀଭାବେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକ କ୍ରମାଗତ ଦାବିକରୁଥିଲେ ଟାଟା କଂପାନୀକୁ ଜାତୀୟ କରଣ କରିବା ସକାଶେ। (para-50) ଏପରିକି ଶ୍ରୀ ଜାନକୀ ପଟ୍ଟନାୟକଙ୍କ ସରକାର ଯେତେବେଳେ ଟାଟା କଂପାନୀକୁ ଚିଲିକାରେ ଚିଙ୍ଗୁଡ଼ିଚାଷ କରିବାକୁ ଜମି ଲିଜ୍ ଦେବାକୁ ନିଷ୍ପତ୍ତି କଲେ ସେତେବେଳେ ବିରୋଧୀଦଳର ନେତାଭାବେ ଶ୍ରୀ ବିଜୁପଟ୍ଟନାୟକ ବିଧାନସଭାରେ ତୀବ୍ର ବିରୋଧ କରିଥିଲେ। ସୁତରାଂ ବିଜୁବାବୁ ମୁଖ୍ୟମନ୍ତ୍ରୀ ହେବାପରେ ଟାଟା କଂପାନୀର ହୃତ୍‌କଂପନ ହେବା କଥା। କାରଣ ଓଡ଼ିଶାରୁ ଟାଟା କଂପାନୀ ବର୍ଷକୁ ଶହ ଶହ କୋଟିଟଙ୍କା ଆୟ କରି ଚାଲିଛି। କେବଳ ଖଣିଲିଜ୍ ପ୍ରତି ଦୃଷ୍ଟି ଦେଲେ ଏହି ଚିତ୍ର ଧରା ପଡ଼ିବ।

| | | | |
|---|---|---|---|
| ୧ | ସରବିଲ (ଲୁହାପଥର) | ୮୬.୨୪୦ ହେକ୍ଟର | ୨୦ବର୍ଷ |
| ୨ | ମହୁଡ଼ି ( ,, ) | ୧୫.୮୪୭ ,, | ୨୦ ବର୍ଷ |
| ୩ | କଟାମାଟି (ଲୁହା ଓ ମାଙ୍ଗାନିଜ) | ୪୦୩.୩୨୩୮ ,, | ୨୦ବର୍ଷ |
| ୪ | ଗୁର୍ଦା, ଜୋରୁରୀ ଓ ତିରିଙ୍ଗ ପାହାଡ଼ (ମାଙ୍ଗାନିଜ ପଥର) | ୬୪୩.୬୧୩ ,, | ୨୦ବର୍ଷ |
| ୫ | ବାମେବାରୀ, ବଣେଇକେଲା ଓ ଜୋରିବାଗ (ମାଙ୍ଗାନିଜ୍ ଓ ଲୁହାପଥର) | ୧୧୪୯.୯୫୬ ,, | ୨୦ବର୍ଷ |
| ୬ | ଜୋଡ଼ା ପଶ୍ଚିମ (,,) | ୧୩୪୭.୭୧୯ ,, | ୨୦ବର୍ଷ |

| | | | |
|---|---|---|---|
| ୭ | ଖଣ୍ଡବନ୍ଧ ( , , ) | ୧୨୯୩.୪୩୩ | ୨୦ବର୍ଷ |
| ୮ | ମୁନମୁରା,ଝରବେଡ଼ା ଓ ଖଟକୁରିବେଡ଼ା(ଚୂନପଥର ଓ ଡ଼ୋଲ ମାଇଟ୍) | ୩୫୫.୧୫୨ ,, | ୨୦ବର୍ଷ |
| ୯ | ,, | ୩୧୧.୬୦୪ ,, | ୫ବର୍ଷ |
| ୧୦ | ସୁକିନ୍ଦା (କ୍ରୋମାଇଟ୍) | ୧୨୬୧.୪୭୬ ,, | ୨୦ ବର୍ଷ |
| ୧୧ | ସୋମାଡ଼ି (ଚୂନପଥର) | ୪୪୪.୭୬୩ ,, | ୨୦ ବର୍ଷ |
| ୧୨ | ଦଣ୍ଡକାରଣ୍ୟ (ମାଗ୍ନେସାଇଟ୍) | ୫୯.୫୬ ,, | ୧୦ ବର୍ଷ |
| ୧୩ | ଦଣ୍ଡକାଟୁର (,,) | ୧୯.୯୪ ,, | ୧୦ବର୍ଷ |
| ୧୪ | ହୁଲାହୁଲି ,, | ୪୦.୫୭ ,, | ୨୦ବର୍ଷ |

## ଲିଜ୍ ସକାଶେ ଆବେଦନ

| | | |
|---|---|---|
| ୧ | ଜୋଡ଼ାପୂର୍ବ (ଲୁହାପଥର) | ୬୭୦.୮୨୨ ହେକ୍ଟର |
| ୨ | ମନମୋରା (ମାଙ୍ଗାନିଜ) | ୧୬.୩୫୦ ,, |
| ୩ | ମାଲଡ଼ା ,, | ୨୧୨୧.୬୦୭ ,, |
| ୪ | ସୋନାଡ଼ି (ଚୂନପଥର) | ୯୨.୧୬୫ ,, |
| ୫ | ,, ,, | ୮୬.୩୫୦ ,, |
| ୬ | ,, ,, | ୨୫୦.୦୦ ,, |
| ୭ | ମତୁଡ଼ା ଓ ଜୋଡ଼ା | ୧୧.୨୫୪ ,, |

(p —190 and 191)

ଉପରୋକ୍ତ ଖଣିଲିଜ୍‌ଗୁଡ଼ିକରୁ ଟାଟା କମ୍ପାନୀର ଆୟ ସହଜରେ ଅନୁମାନ କରିହେଉଛି। ରାଜ୍ୟର ଅମୂଲ୍ୟ ଖଣିଜ ସଂପଦକୁ ବର୍ଷ ବର୍ଷ ଧରି ଏହି ସବୁ ବଡ଼ ବଡ଼ କଂପାନୀ ଶୂନ୍ୟ କରି ଚାଲିଛନ୍ତି।କିନ୍ତୁ ରାଜ୍ୟର ଅର୍ଥନୈତିକ ବିକାଶ, ଶ୍ରମିକମାନଙ୍କର ମଙ୍ଗଳ, ବେକାରୀ ସମସ୍ୟା ସମାଧାନ ନିମନ୍ତେ ଏମାନଙ୍କର କୌଣସି ଭୂମିକା ନାହିଁ।

ଏଣୁ ସ୍ୱାଭାବିକ ଭାବେ ବିଜୁ ବାବୁଙ୍କ ପୂର୍ବର ଟାଟା ବିରୋଧୀ ତୁମ୍ୱୀ ତୋଫାନ ଦେଖି ଜନଗଣ ଭାବିଥିଲେ ଯେ ଏଣିକି ଟାଟା ଲୁଣ୍ଠନରାଜର ପରିସମାପ୍ତି ଘଟିବ ଓ ରାଜ୍ୟ ସରକାର ଓଡ଼ିଶା ଭୂଇଁରୁ ଟାଟାକୁ ବହିଷ୍କାର କରି ଜନସ୍ୱାର୍ଥ ପାଇଁ ଖଣିଖାଦାନ ଓ ଅନ୍ୟାନ୍ୟ ଶିଳ୍ପକୁ ବ୍ୟବହାର କରିବେ।

# ଟାଟା କଂପାନୀ ସହ ବୁଝାମଣା ପତ୍ର ସ୍ୱାକ୍ଷର
# (Memorandum of understanding)

କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଯେ ବିଜୁବାବୁ ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନାକୁ ନେଇ ଟାଟା କମ୍ପାନୀ ସହ ଏକ ଜଟିଳ ବିବଦମାନ କାରବାର ଆରମ୍ଭ କଲେ ଯାହାକୁ ଏହି ଆବେଦନକାରୀ ତୀବ୍ର ପ୍ରତିବାଦ କରିଆସିଛନ୍ତି।ଏପରି କି ଗଣତନ୍ତ୍ରର ୪ର୍ଥ ସ୍ତମ୍ଭଭାବେ ପରିଚିତ ସମ୍ବାଦପତ୍ରମାନେ ମଧ୍ୟ ଏହି କାରବାର ସଂପର୍କରେ ବିଭିନ୍ନ ପ୍ରଶ୍ନ ଉଠାଇଛନ୍ତି।ରାଜ୍ୟର ବିଶିଷ୍ଟ ସର୍ବୋଦୟ ନେତା ଶ୍ରୀ ମନମୋହନ ଚୌଧୁରୀ, ଜନତାଦଳର ବିଶିଷ୍ଟ ଲୋକସଭା ସଦସ୍ୟ ଓ ପ୍ରାକ୍ତନ କେନ୍ଦ୍ରମନ୍ତ୍ରୀ ଶ୍ରୀ ଶ୍ରୀକାନ୍ତ ଜେନା ପ୍ରମୁଖ ମାନ୍ୟଗଣ୍ୟ ବ୍ୟକ୍ତିମାନେ ଏହା ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି।(Press Statements / Clippings)

ବିଜୁବାବୁ କ୍ଷମତାକୁ ଆସିବା ପରେ ଯଦିଓ ଚାର୍ଜକ୍ରୋମ କାରଖାନା ରାଜ୍ୟ ସରକାରଙ୍କ ତୁରନ୍ତ ଦୃଷ୍ଟି ଆକର୍ଷଣ କରିଛି, କାରଣ କ୍ରମାଗତ କ୍ଷତି ଘଟିଲା ଓ ବୈଦେଶିକ ମୁଦ୍ରା ଅର୍ଜନ ହ୍ରାସ ହେବାକୁ ଲାଗିଲା। କିନ୍ତୁ ସରକାର ଏଥିପ୍ରତି ଗୁରୁତ୍ୱ ଆରୋପ କରିନାହାନ୍ତି ଓ କ୍ଷତି ବଢ଼ି ବଢ଼ି ଚାଲିଲା। ଯେତେବେଳେ ଷ୍ଟେଟ୍‌ବ୍ୟାଙ୍କ୍ ପକ୍ଷରୁ ରାଜ୍ୟ ସରକାରଙ୍କୁ ଓ ଖଣି ନିଗମକୁ ନୋଟିସ ଗଲା ଯେ ୨୯ ଅଗଷ୍ଟ ୧୯୯୧ ସୁଦ୍ଧା ୧୪.୦୩ କୋଟି ଟଙ୍କା ପରିଶୋଧ ନ ହେଲେ ଆଇନଗତ ପନ୍ଥା ଗ୍ରହଣ କରାଯିବ, ସେତେବେଳେ କେବଳ ରାଜ୍ୟ ସରକାରଙ୍କ ନିଦ୍ରାଭଙ୍ଗ ହେଲା। ଏଠାରେ ଉଲ୍ଲେଖନୀୟ ଯେ ଋଣଦାତାମାନେ ବାରମ୍ବାର ଋଣ ପରିଶୋଧ ସକାଶେ ଖଣି ନିଗମ ଓ ରାଜ୍ୟସରକାରଙ୍କୁ ପତ୍ରାଳାପ କରିଥିଲେ ସୁଦ୍ଧା ସରକାର କାହିଁକି ନୀରବ ରହିଥିଲେ ବୁଝାପଡୁ ନାହିଁ। (Para - 10)

ଏଭଳି ସମୟରେ ଦେଶର ବୈଦେଶିକ ମୁଦ୍ରା ଅର୍ଜନକାରୀ, ସଂପୂର୍ଣ୍ଣ ରପ୍ତାନୀ ଭିତ୍ତିକ ଚାର୍ଜକ୍ରୋମ କାରଖାନାକୁ ରାତି ଅଧିଆ ବିକ୍ରି କଲା ଭଳି ଏକ ପଦକ୍ଷପ ମୁଖ୍ୟମନ୍ତ୍ରୀ ଗ୍ରହଣ କଲେ। ଜୁଲାଇ ୨୭, ୧୯୯୧ରେ ଟାଟା କମ୍ପାନୀ ସହ ଏକ ବୁଝାମଣାପତ୍ର (Memo. of understanding) ସ୍ୱାକ୍ଷରୀତ ହେଲା।କିନ୍ତୁ ଏହି ବୁଝାମଣା ପତ୍ରରେ ଚାର୍ଜକ୍ରୋମ ବିକ୍ରୀ କରିବାର କାରଣ କ'ଣ ଏହାଦ୍ୱାରା ଜନସ୍ୱାର୍ଥ ତଥା ରାଜ୍ୟର ସ୍ୱାର୍ଥ ସୁରକ୍ଷିତ କି ନୁହେଁ ତାହା ଆଦୌ ଉଲ୍ଲେଖ ନାହିଁ। ଯେ କୌଣସି ଶୁଭବୁଦ୍ଧି ସଂପନ୍ନ ମଣିଷ ଏହାକୁ ଦେଖିଲେ ବୁଝିପାରିବେ ଯେ ଅନ୍ୟ କୌଣସି ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ବା ସ୍ୱାର୍ଥ ନ ଥିଲେ ଏଭଳି ବୁଝାମଣା କୌଣସି ଦାୟିତ୍ୱ ସଂପନ୍ନ ସରକାର କରିବେ ନାହିଁ।ଏହି ମେମୋରେ ରାଜ୍ୟ ସରକାରଙ୍କ ପକ୍ଷରୁ (୧) ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, (୨) ଅର୍ଥମନ୍ତ୍ରୀ ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲା, (୩) ସରକାରୀ ଉଦ୍ୟୋଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ ଚନ୍ଦ୍ର ଘଡ଼େଇ (୪) ମୁଖ୍ୟମନ୍ତ୍ରୀଙ୍କ ମୁଖ୍ୟ ସଚୀବ(୫) ଅର୍ଥବିଭାଗ ମୁଖ୍ୟସଚୀବ (୬) ଖଣି ନିଗମର ସି.ଏମ୍.ଡ଼ି. (୭) ଇସ୍ପାତ ଓ ଖଣି ବିଭାଗ ସଚୀବ ଏବଂ ଟାଟା କମ୍ପାନୀ ତରଫରୁ (୧) କଂପାନୀର ସି.ଏମ୍.ଡ଼ି. ଶ୍ରୀ ଋଷି ମୋଦୀ (୨) ଏ. କାଶ୍ୟପ (୩) ଏନ୍. ପଟ୍ଟନାୟକ ସ୍ୱାକ୍ଷର **କରିଛନ୍ତି**।ରାଜ୍ୟର ଏକ ବିରାଟ ଶିଳ୍ପକୁ ବିକ୍ରୀ କରିବାର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ମାତ୍ର ଦୁଇପୃଷ୍ଠାର ୪୦ ଧାଡ଼ି ଟାଇପ୍ **ଅକ୍ଷର** ମଧ୍ୟରେ ସଂପାଦିତ ହୋଇଛି। ଅଧଗୁଣ୍ଠେ ଜମି କିଣା ସକାଶେ ବୋଧେ ଏହା ଠାରୁ ବେଶି କାଗଜ ଦରକାର ହୋଇଥାଏ।

Brief record of the decisions taken in the O/o the Chief Minister on 27.7.91 on the sale of the assets and liabilities of OMC's Charge Chrome Plant at Bamnipal to TISCO.

Annexure

Present :

Chief Minister

Finance Minister

Minister of State, Department of Public Enterprise.

Principal Secretary to Chief Minister

Principal Secretary, Finance

Chairman-cum-Managing Director, OMC Ltd.

Secretary to Government, Department of Steel & Mines

Sri Russi Mody, Chairman-cum-Managing Director, TISCO.

Sri A. Kashyap

Shri N. Patnaik

1. The total liabilities of the Charge Chrome Plant are as follows :

A. Loans, Current assets and current liabilities:

(i) Rs. 72.37 crores ( towards principal and interest of foreign loans)

(ii) Rs. 14.54 crores ( Rupee loan)

| | | |
|---|---|---|
| | Rs. 86.91 crores | ( total loan component) |
| Add: | Rs. 16.53 crores | current liabilities |
| Subtract | Rs. 21.27 crores | current assets |
| Net : | Rs. 82.17 crores ~~xx xxx~~ | |

B. Equity : Rs. 24.44 crores

C. Dues payable to OHC :

Rs. 28.19 crores

Grand total of A, B & C ... Rs 134.80 crores

contd.

...F MINISTER

It was agreed that subject to the approval of Board and to the conditions stipulated in para 3 below, TISCO will take over the assets and liabilities of the entire Charge Chrome Plant including lands, buildings, equipments, and inventories in the following manner :

The entire loan/current assets/current liabilities totalling Rs 82.17 crores will be taken over by TISCO with immediate effect. TISCO will pay the State Government the remaining Rs 52.63 crores in fifteen yearly equal instalments without interest beginning with the current year 1991-92. TISCO will safeguard the interests of the staff and labour.

3. The agreement in para 2 is subject to the following conditions :

(1) TISCO will be allowed renewal of their entire lease holdings in chromite when it becomes due sometime in 1993.

(2) TISCO will be allowed to dump the overburden of their chromite mine in an adjoining vacant plot. They will apply for surface rights over their plot and will be subject to the relevant mining, ecological and other laws.

(3) Steady, uninterrupted power at 35 MW will be made available for the Plant from the date of signing the agreement.

(4) TISCO will not be bound by OMC's subsisting agreement including agreements on the marketing of the Charge chrome produced in the Plant.

CHIEF MINISTER
ORISSA

ଏହି ମେମୋରେ ରହିଛି -

| | | | |
|---|---|---|---|
| (୧) | କ:- ରଣ,ଚଳନ୍ତି ସଂପତ୍ତି ଓ ଚଳନ୍ତିଦେୟ | ୮୨.୧୭ କୋଟି | ଟଙ୍କା |
| | ଖ:- ଅଂଶଧନ | ୨୪.୪୪ କୋଟି | " |
| | ଗ:- ଖଣି ନିଗମର ପ୍ରାପ୍ୟ | ୨୮.୧୯ କୋଟି | " |
| | ସମୁଦାୟ | ୧୩୪.୮୦ କୋଟି | ଟଙ୍କା |

(୨) ବୋର୍ଡ଼ର ଅନୁମୋଦନ କ୍ରମେ ଓ ଅନୁଚ୍ଛେଦ -୩ର ସର୍ତ୍ତାବଳୀ ଅନୁଯାୟୀ ଟାଟା କଂପାନୀ ଚାର୍ଜକ୍ରୋମ ପ୍ଲାଣ୍ଟର ସମସ୍ତ ସଂପତ୍ତି ଓ ଦେୟ ଅଧିଗ୍ରହଣ ନିମ୍ନ ପ୍ରକାରେ କରିବ। କାରଖାନାର ସମସ୍ତ ଋଣ/ ଚଳନ୍ତି ସଂପତ୍ତି/ ଚଳନ୍ତି ଦେୟ ମିଶି ୮୨.୧୭ କୋଟି ଟଙ୍କା ତୁରନ୍ତ ହସ୍ତାନ୍ତର ହେବ।ଟାଟା କଂପାନୀ ଅବଶିଷ୍ଟ ୫୨.୬୩ କୋଟି ଟଙ୍କା ରାଜ୍ୟ ସରକାରଙ୍କୁ ୧୫ଟି ସମାନ କିସ୍ତିରେ ବିନା ସୁଧରେ ପରିଶୋଧ କରିବ।

(୩) ଅନୁଚ୍ଛେଦ ୨ର ରାଜିନାମା ନିମ୍ନୋକ୍ତ ସର୍ତ୍ତଗୁଡ଼ିକ ପୂରଣ ହେବା ଉପରେ ନିର୍ଭର କରୁଛି।-

(i) 1993 ରେ ଟାଟା କଂପାନୀର ଲିଜ୍ ଶେଷ ହେବାକୁ ଯାଉଥିବା ସମସ୍ତ କ୍ରୋମାଇଟ୍ ଲିଜ୍‌କୁ ନବୀ କରଣ କରାଯିବ।

(ii)କ୍ରୋମାଇଟ୍ ଖଣିର ଉଦ୍‌ବୃତ୍ତ ମାଟି(Over Burden)କୁ ଠୁଳ କରିବା ସକାଶେ ସଂଲଗ୍ନ ଖାଲି ଜାଗା ଟାଟାକୁ ପ୍ରଦାନ କରାଯିବ। ଏହି କଂପାନୀକୁ ସେହି ପ୍ଲଟ୍‌ର ଭୂପୃଷ୍ଠ ଅଧିକାର ଦିଆଯିବ ଓ ଏହା ଆନୁସଂଗିକ ଖଣି, ପରିବେଶ ଓ ଅନ୍ୟାନ୍ୟ ଆଇନ ଦ୍ୱାରା ପରିଚାଳିତ ହେବ।

(iii)ଚୁକ୍ତିନାମା ସ୍ୱାକ୍ଷର ହେବା ଦିନଠାରୁ କାରଖାନାକୁ କ୍ରମାଗତ ଅବିରାମ ଭାବେ ୩୫ ମେଗାୱାଟ ବିଦ୍ୟୁତ୍ ଶକ୍ତି ଯୋଗାଣ ହେବ।

(iv)ଖଣି ନିଗମ ଦ୍ୱାରା ସଂପାଦିତ ପୂର୍ବରୁ କୌଣସି ଚୁକ୍ତି ଏପରି କି ବାଣିଜ୍ୟିକ ଚୁକ୍ତିକୁ କଂପାନୀ ମାନିବାକୁ ବାଧ୍ୟ ନୁହେଁ।(Memo. of understanding)

ଉପରୋକ୍ତ **ଚୁକ୍ତିନାମାରେ** ସମ୍ୟକ ବ୍ୟାଖ୍ୟା ହେବା ଦରକାର। ଏକଥା ସତ୍ୟ ଯେ ଏହି ମେମୋ ଜରିଆରେ ଯଦିଓ ସରକାର ଚାର୍ଜକ୍ରୋମ ପ୍ଲାଣ୍ଟକୁ ବିକ୍ରୀ କରି ନାହାନ୍ତି ତଥାପି ଏହି ମେମୋ ହିଁ କାରଖାନା ବିକ୍ରୀର ନିୟାମକ ବା ଭିତ୍ତିପତ୍ର। ଏହା ପରେ ଯେଉଁ ସବୁ ଚୁକ୍ତିନାମା ଅଧ୍ୟାଦେଶ, ଭିତ୍ତି ରିପୋର୍ଟ, ବିଭାଗୀୟ ସ୍ପଷ୍ଟୀକରଣ ବା ଅନୁମୋଦନ କରିଛନ୍ତି ବା କରାଇଛନ୍ତି ତାହା କେବଳ ଆଇନକୁ ଆଖିଠାର ମାରିବା ସକାଶେ ବା ଏକ ଜନସ୍ୱାର୍ଥ

ବିରୋଧୀ, ଅସାମ୍ବିଧାନିକ, କ୍ଷମତା ବହିର୍ଭୁକ୍ତ ଓ ବେଆଇନ ବିକ୍ରି କାରବାରକୁ ଆଇନଗତ ପ୍ରଲେପ ଦେବା ସକାଶେ ଯଦିଓ ବିଜୁବାବୁ ସମସ୍ତ ପଦକ୍ଷେପ ନେଇଛନ୍ତି ତଥାପି ଶେଷ ପର୍ଯ୍ୟନ୍ତ "ଘୋଡ଼ା ଆଗରେ ଗାଡ଼ି" ବାନ୍ଧିଲା ପରି ହୋଇ ଯାଇଛି। ସୁତରାଂ ଏହି ବୁଝାମଣା ପତ୍ର ଦ୍ୱାରା ଯେଉଁ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକ ଉତ୍ଥାପିତ ହୋଇଛି ତାହା ଏବେ ମଧ୍ୟ **ଅମୀମାଂସିତ** - ସରକାରଙ୍କ ପାଖରେ ତାର ଜବାବ ନାହିଁ।

(୧) ଚାର୍ଜକ୍ରୋମ ବିକ୍ରୀ କରିବାର କାରଣ କ'ଣ? କେବଳ କ୍ଷତି ଅଭିଯୋଗ ଏଥିପାଇଁ ଯଥେଷ୍ଟ କି? ଯଦି କ୍ଷତି ହୋଇଥାଏ ତେବେ ଏହାର କୌଣସି ନିରାକରଣ ବ୍ୟବସ୍ଥା ସରକାର ଗ୍ରହଣ କରିଛନ୍ତି କି? ଏହି ରୁଗ୍‌ଣ ସଂସ୍ଥାକୁ ପୁନରୁଦ୍ଧାର କରିବା ସକାଶେ କୌଣସି ବିଶେଷଜ୍ଞ କମିଟିର ମତାମତ କାହିଁକି ନିଆ ଯାଇନାହିଁ?

(୨) ମେମୋରେ ଉଲ୍ଲେଖ ହୋଇଛି ଯେ ବିକ୍ରୀ ଲବ୍‌ଧ ୫୨.୬୩ କୋଟି ଅର୍ଥାତ୍ ୫୩ କୋଟି ଟଙ୍କା ୧୫ଟି ସମାନ ବାର୍ଷିକ କିସ୍ତିରେ ବିନା ସୁଧରେ ଟାଟା କଂପାନୀ ରାଜ୍ୟ ସରକାରଙ୍କୁ ପରିଶୋଧ କରିବ। ଅର୍ଥାତ୍ ଟାଟା କଂପାନୀ ଭଳି ଦେଶର ସର୍ବବୃହତ୍ ଶିଳ୍ପପତି ପରିବାରକୁ ରାଜକୋଷରୁ ଏହି ସୁଧ ଛାଡ଼ କରିବା ଅଧିକାର ସରକାରଙ୍କର ରହିଛି କି ବା ଯଦି ଥାଏ ତାହା ଜନସ୍ୱାର୍ଥର ଅନୁକୂଳ କି? ସମସ୍ତେ ଜାଣନ୍ତି ଦେଶର ଯେଉଁ ସବୁ କଳ କାରଖାନା କ୍ଷତିରେ ଚାଲୁଛି ସେଗୁଡ଼ିକୁ ଯଦି ସୁଧ ଛାଡ଼ କରି ଦିଆଯାଏ ତେବେ କୌଣସିଶିଳ୍ପରୁଗ୍‌ଣ ହେବା ପ୍ରଶ୍ନ ଉଠୁନାହିଁ। ସୁତରାଂ ଏହି ବିଶେଷ କାରଖାନା କ୍ଷେତ୍ରରେ ସୁଧ ଛାଡ଼ କରିବା କେତେ ଦୂର ଆଇନ ସଂଗତ? ଟାଟା କଂପାନୀ ଯେଉଁ ସୁଧ ଛାଡ଼ ପାଇଛି ତାହା ନିମ୍ନ ପ୍ରକାରେ

ମୂଳଧନ - ୫୩ କୋଟି

ପରିଶୋଧ କିସ୍ତି - ୩.୫୩୩୩ କୋଟି

| | ମୂଳଧନ | ବାର୍ଷିକସୁଧ (୨୧.୫ ହାର) | ମୋଟ | **ପରିଶୋଧ ପରେ ମୂଳଧନ** |
|---|---|---|---|---|
| ୧ମବର୍ଷ | ୫୩.୦୦ | ୧୧.୩୯୫ | ୬୪.୩୯୫ | ୬୦.୮୬୧୭ |
| ୨ୟବର୍ଷ | ୬୦.୮୬୧୭ | ୧୩.୦୮୫୨ | ୭୩.୯୪୬୯ | ୭୦.୪୧୩୬ |
| ୩ୟ | ୭୦.୪୧୩୬ | ୧୫.୧୩୮୯ | ୮୫.୫୫୨୫ | ୮୨.୦୧୯୨ |
| ୪ର୍ଥ | ୮୨.୦୧୯୨ | ୧୭.୬୩୪୧ | ୯୯.୬୫୩୩ | ୯୬.୧୨୦୦ |
| ୫ମ | ୯୬.୧୨୦୦ | ୨୦.୬୬୫୮ | ୧୧୬.୭୮୫୮ | ୧୧୩.୨୫୨୫ |
| ୬ଷ୍ଠ | ୧୧୩.୨୫୨୫ | ୨୪.୩୪୯୩ | ୧୩୭.୬୦୧୮ | ୧୩୪.୦୬୮୫ |
| ୭ମ | ୧୩୪.୦୬୮୫ | ୨୮.୮୨୪୭ | ୧୬୨.୮୯୩୨ | ୧୫୯.୩୬ |
| ୮ମ | ୧୫୯.୩୬ | ୩୪.୨୬୨୪ | ୧୯୩.୬୨୨୪ | ୧୯୦.୦୮୯୧ |
| ୯ମ | ୧୯୦.୦୮୯୧ | ୪୦.୮୬୯୧ | **୨୩୦.୯୫୮୨** | ୨୨୭.୪୨୪୯ |
| ୧୦ମ | ୨୨୭.୪୨୪୯ | ୪୮.୮୯୬୩ | ୨୭୬.୩୨୧୨ | ୨୭୨.୭୮୭୯ |
| ୧୧ଶ | ୨୭୨.୭୮୭୯ | ୫୮.୬୪୯୪ | ୩୩୧.୪୩୭୩ | ୩୨୭.୯୦୪୦ |
| ୧୨ଶ | ୩୨୭.୯୦୪୦ | ୭୦.୪୯୯୩ | ୩୯୮.୪୦୩୪ | ୩୯୪.୮୭୦୧ |
| ୧୩ଶ | ୩୯୪.୮୭୦୧ | ୮୪.୮୯୭୦ | ୪୭୯.୭୬୭୧ | ୪୭୬.୨୩୩୮ |
| ୧୪ଶ | ୪୭୬.୨୩୩୮ | ୧୦୨.୩୯୦୨ | ୫୭୮.୬୨୪ | ୫୭୫.୦୯୦୭ |
| ୧୫ଶ | ୫୭୫.୦୯୦୭ | ୧୨୩.୬୪୪୫ | ୬୯୮.୭୩୫୨ | ୬୯୫.୨୦୧୯ |

ଅର୍ଥାତ ଟାଟା କମ୍ପାନୀ ୬୯୫ କୋଟି ୨୦ ଲକ୍ଷ ୧୯ ହଜାର ଟଙ୍କା ସୁଧ ବାବଦରେ ଛାଡ଼ ପାଇଛି। ସୁତରାଂ ଟାଟାକୁ ଛାଡ଼ କରାଯାଇଥିବା ଏହି ବିଶାଳ ପରିମାଣର ସୁଧ ଆଇନ ବିରୋଧୀ, କାରଣ ରାଜ୍ୟ ସରକାରଙ୍କ ଏହା କ୍ଷମତା ବହିର୍ଭୁତ। ଏହା ଦ୍ୱାରା ଟାଟା କମ୍ପାନୀ ଭଳି ଏକ ଏକଚାଟିଆ ଶିଳ୍ପ ପରିବାରକୁ ସରକାର ବେଆଇନ ସ୍ୱତନ୍ତ୍ର ସୁବିଧା ଦେଇଛନ୍ତି ଯାହାକି ସମ୍ବିଧାନର ମୌଳିକ ଅଧିକାର ପରିଚ୍ଛେଦ ଅନ୍ତର୍ଭୁକ୍ତ ସମାନତା ଅଧିକାରର ପରିପନ୍ଥୀ।

(୩) ଏହି ବୁଝାବଣା ପତ୍ରରେ ସରକାରଙ୍କ ପକ୍ଷରୁ ଯେଉଁମାନେ ସ୍ୱାକ୍ଷର କରିଛନ୍ତି ସେମାନଙ୍କ ମଧ୍ୟରେ ଓ.ଏମ.ସି. (ଆଲଏଜ୍) ଲିମିଟେଡ୍ ନାହିଁ। ଅଥଚ ଏହି ସରକାରୀ ସଂସ୍ଥା ହିଁ ଚାର୍ଜକ୍ରୋମର ପ୍ରକୃତ ମାଲିକ ଥିଲା। ସେତେବେଳେ ଓ.ଏମ.ସି.ର ଏକ ସହାୟକ ସଂସ୍ଥା ଭାବେ ଓ.ଏମ.ସି. (ଆଲଏଜ) ଲିମିଟେଡ୍ ଏହି କାରଖାନାର ପରିଚାଳକ। ଏହାର ସ୍ୱତନ୍ତ୍ର ରହିଛି ଏବଂ ଏହାର ବୋର୍ଡ଼ ଅଫ ଡାଇରେକ୍ଟର ଅଛନ୍ତି। ସୁତରାଂ କମ୍ପାନୀ ଆଇନ ଅନୁଯାୟୀ ଓ.ଏମ.ସି. (ଆଲଏଜ)କୁ ବାଦ ଦେଇ ଚାର୍ଜକ୍ରୋମ କାରଖାନା ମାଲିକାନା ପରିବର୍ତ୍ତନ ସଂକ୍ରାନ୍ତୀୟ ନିଷ୍ପତ୍ତି ଗ୍ରହଣ କରିବା ପଛରେ କି ରହସ୍ୟ ରହିଛି ?

(୪) ଚାର୍ଜକ୍ରୋମ କାରଖାନା ହସ୍ତାନ୍ତର ସହ କ୍ରୋମାଇଟ ଖଣିର ପଟ୍ଟାକୁ ନବୀକରଣ କରିବା ସର୍ତ୍ତର କୌଣସି ଆଇନସଂଗତ ସମ୍ପର୍କ ନାହିଁ। କାରଣ ଖଣିର ପ୍ରକୃତ ମାଲିକ ହେଉଛନ୍ତି ରାଜ୍ୟ ସରକାର। ଚାର୍ଜକ୍ରୋମ କାରଖାନାର ମାଲିକ ହେଉଛନ୍ତି ଓ.ଏମ.ସି. (ଆଲଏଜ) ଲିମିଟେଡ୍। ତା ହେଲେ ଖଣିପଟ୍ଟା ନବୀକରଣ ଓ ଚାର୍ଜକ୍ରୋମ କାରଖାନା ବିକ୍ରି ପ୍ରଶ୍ନ କେଉଁ କାରଣରୁ ସେହି ବୁଝାମଣା ପତ୍ରର ବିଷୟବସ୍ତୁ ହେଲା ?

(୫) ୩୫ ମେଗାୱାଟ ବିଦ୍ୟୁତ ଶକ୍ତି ଯୋଗାଣ ଅବିରାମ ଭାବେ କରିବା ସକାଶେ ଟାଟା କମ୍ପାନୀ ନିକଟରେ ପ୍ରତିଶ୍ରୁତିବଦ୍ଧ ହେବା ପଛରେ ସରକାରଙ୍କ କି ଉଦ୍ଦେଶ୍ୟ ରହିଛି ? ବିଶେଷକରି ରାଜ୍ୟର ଉତ୍କଟ ବିଦ୍ୟୁତ ସଙ୍କଟ ଯୋଗୁ ଯେତେବେଳେ ବହୁ ଶିଳ୍ପ କ୍ଷତିର ସମ୍ମୁଖୀନ ହେଉଛନ୍ତି ଓ ଚାର୍ଜକ୍ରୋମ କାରଖାନାର କ୍ଷତି ମୂଳରେ ଏହା ଏକ ବଡ଼ କାରଣ ଥିଲା, ସେତେବେଳେ ଟାଟା ଭଳି ମାଲିକଙ୍କୁ ଏଭଳି ସୁବିଧା ପ୍ରଦାନ କରିବା ପଛରେ କି ରହସ୍ୟ ରହିଛି ? ବିଶେଷକରି ଏହି ବୁଝାମଣାପତ୍ର ସ୍ୱାକ୍ଷରବେଳେ ଓଡ଼ିଶା ବିଦ୍ୟୁତ ବୋର୍ଡ଼ର ପରାମର୍ଶ, ସମ୍ମତି ବା ସ୍ୱୀକୃତି ସରକାର ଚାହିଁନାହାଁନ୍ତି।

(୬) ଓ.ଏମ.ସି.ର ବିଭିନ୍ନ ଚୁକ୍ତିନାମା ବିଶେଷକରି ବାଣିଜ୍ୟିକ ଚୁକ୍ତିନାମା ସକାଶେ ଟାଟା କମ୍ପାନୀ ଭବିଷ୍ୟତରେ ଦାୟୀ ହେବ ନାହିଁ ବୋଲି ସରକାର ରାଜି ହେବା ଦ୍ୱାରା ଭବିଷ୍ୟତରେ ଓ.ଏମ.ସି. ଉପରେ ଖଣ୍ଡାଧାର ଝୁଲାଇ ଦିଆଗଲା। ଏହା ମଧ୍ୟରୁ ଦୁଇଟି ବିଷୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ।

•

(୧) ଆୟକର - ଓଡ଼ିଶା ଖଣି ନିଗମ ଯେଉଁ ୨୮.୧୯ କୋଟି ଟଙ୍କା ଟାଟା କମ୍ପାନୀ ନିକଟରୁ ପାଇବା କଥା ତାହା ଏକକାଳୀନ ପାଉନାହିଁ। କାରଣ ୫୩ କୋଟି ଟଙ୍କାର ଦେୟ ଟାଟା ୧୫ ବର୍ଷରେ ପରିଶୋଧ କରିବ। କିନ୍ତୁ ଯେଉଁଦିନ କାରଖାନା ବିକ୍ରି ହେଉଛି ସେଦିନ ଏହି ୨୮.୧୯ କୋଟି ଟଙ୍କା ଖଣି ନିଗମର ଆୟ ଉପରେ ଯଦି ଆୟକର ଲାଗୁ ହୁଏ ତାର ବୋଝ ଖଣିନିଗମ ଉପରେ ପଡିବ ନାହିଁ କି ?

(୨) ବାଣିଜ୍ୟିକ ଚୁକ୍ତି- ଜର୍ମାନୀର କ୍ଲୋକନର ଏଣ୍ଡ କୋଃ ସହ ୨.୫ ଲକ୍ଷ ଟନ ଚାର୍ଜକ୍ରୋମ ବାଣିଜ୍ୟ ସକାଶେ ଯେଉଁ ଚୁକ୍ତି ଖଣିନିଗମ ସହ ହୋଇଥିଲା, ତା ମଧ୍ୟରୁ ମାତ୍ର ୧.୦୫

ଲକ୍ଷ ଟନ ଚାର୍ଜକ୍ରୋମ ଯୋଗାଣ ହୋଇଛି ସୁତରାଂ ଅବଶିଷ୍ଟ ୧.୪୫ ଲକ୍ଷ ଟନ ଚାର୍ଜକ୍ରୋମ ଏହି କମ୍ପାନୀ ଓଡ଼ିଶା ଖଣି ନିଗମ ନିକଟରୁ ନେବାକୁ ଚାହିଁବା ସ୍ୱାଭାବିକ। ଫଳରେ ଚାର୍ଜକ୍ରୋମ କାରଖାନା ବିକ୍ରି ପରେ ଖଣିନିଗମ ଉପରେ ଏତଦ୍ ସଂକ୍ରାନ୍ତୀୟ ବୋଝ ରହୁଛି। (para-12)

ସୁତରାଂ ବହୁ ଗୁରୁତ୍ୱପୂର୍ଣ୍ଣ ବ୍ୟବସାୟିକ ପ୍ରଶ୍ନକୁ ଏଡ଼ି ଯାଇ ରାଜ୍ୟ ସରକାର କି ଭଳି ଏକ ବୁଝାମଣାର ପତ୍ର ଟାଟା କଂପାନୀ ସହ ସ୍ୱାକ୍ଷର କଲେ ?

(୭) ଚାର୍ଜକ୍ରୋମ ଭଳି ଏକ ବଡ଼ ଶିଳ୍ପକୁ ଯଦି ନିହାତି ବିକ୍ରୀ କରିବା ଛଡ଼ା ସରକାରଙ୍କ ଅନ୍ୟଗତି ନ ଥିଲା, ତା ହେଲେ ଯେଉଁ ସବୁ ସମୁଚିତ ପନ୍ଥା ଗ୍ରହଣ କରିବା କଥା ତାହା ମଧ୍ୟ କରି ନାହାନ୍ତି। ପ୍ରଥମ ପ୍ରଶ୍ନ ବିନା ଟେଣ୍ଡରରେ ଏଭଳି ବିକ୍ରୀ ଆଇନ ସଂଗତ କି? ବୈଦେଶିକ ମୁଦ୍ରା ଅର୍ଜନକାରୀ ଏକ ସଂସ୍ଥାକୁ କିଣିବା ସକାଶେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଶତାଧିକ ପ୍ରତିଦ୍ୱନ୍ଦୀ ଆସି ପାରିଥାନ୍ତେ। ଏହାଦ୍ୱାରା ରାଜ୍ୟ ସରକାର ଅଧିକ ମୂଲ୍ୟ ଓ ଜନସ୍ୱାର୍ଥ ଓ ରାଜ୍ୟ ସ୍ୱାର୍ଥ ଅନୁକୂଳ ସର୍ତ୍ତରେ ଏହି କାରଖାନାକୁ ବିକ୍ରୀ କରି ପାରିଥାନ୍ତେ। କିଂତୁ ଏସବୁ ପନ୍ଥା କାହିଁକି ଗ୍ରହଣ କରାଗଲା ନାହିଁ? ଏଥିରୁ ସ୍ପଷ୍ଟ ଯେ ଟାଟା କଂପାନୀ ନିର୍ଦ୍ଦେଶରେ ବିଜୁପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଆସନର କ୍ଷମତାକୁ ଅପବ୍ୟବହାର କରି ଚାର୍ଜକ୍ରୋମ କାରଖାନାକୁ one man show ଭାବେ ବିକ୍ରୀ କରିବା ନିଷ୍ପତ୍ତି ଗ୍ରହଣ କରିଛନ୍ତି ଓ ଅନ୍ୟାନ୍ୟ **ବିଭାଗୀୟ**ମନ୍ତ୍ରୀ ଓ ଦପ୍ତର ଯେଉଁମାନେ ଏଥିରେ ସ୍ୱାକ୍ଷର କରିଛନ୍ତି ସେମାନେ କେବଳ ଟାଟା କଂପାନୀର ସ୍ୱରକୁ ଉଚ୍ଚାରିତ କରିଛନ୍ତି। (para-20)

## ସରକାରୀ ଭିତ୍ତିପତ୍ର

## Memorandum/Base Report

ଟାଟା କଂପାନୀ ସହ ବୁଝାମଣା ଦିଲିଲ ଜୁଲାଇ ୨୭ ତାରିଖରେ ସ୍ୱାକ୍ଷର ହେବା ପରେ ସେପ୍ଟେମ୍ବର ୧୯ ତାରିଖରେ ରାଜ୍ୟ ସରକାରଂକ ମୁଖ୍ୟ ସଚିବ ଏକ ଭିତ୍ତିପତ୍ର ବା Base report ପ୍ରସ୍ତୁତ କଲେ। ଅର୍ଥାତ୍ ୨୭ ଜୁଲାଇ ମେମୋକୁ କାର୍ଯ୍ୟକାରୀ କରିବା ସକାଶେ ଓ ଭବିଷ୍ୟତ ଆଇନଗତ ଅସୁବିଧାକୁ ଏଡ଼ାଇବା ସକାଶେ ଏହା ପ୍ରସ୍ତୁତ ହେଲା ଯାହାର କୌଣସି ମୂଲ୍ୟ ନାହିଁ। ଏହି ରିପୋର୍ଟ ୨୬ ପୃଷ୍ଠା ବ୍ୟାପୀ ଓ ଏଥିରେ ବହୁ ଦଲିଲ ରହିଛି ଯାହା ସବୁ କାରାଖାନରେ ବିକ୍ରୀ କରିବା ସକାଶେ ଭୂମି ପ୍ରସ୍ତୁତ କରିଛି।

ଏହି ରିପୋର୍ଟର ମୁଖବନ୍ଧ ଅନୁଚ୍ଛେଦରେ ରହିଛିଯେ ସରକାର ଓଡ଼ିଶା ଖଣି-ନିଗମର ସିଏମ୍‌ଡ଼ିଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଟିସ୍କୋ ଇସ୍ପାତ୍ ଆଲଏକ୍, ଇମ୍ପାଂ ଓ ଫାକର ସହ ଚାର୍ଜକ୍ରୋମ କାରଖାନାର ଭବିଷ୍ୟତ ପରିଚାଳନାରେ ଅଂଶ ଗ୍ରହଣ ବା ଏହାକୁ ସିଧାସଳଖ କିଣିବାରେ ସାମିଲ ହୋଇ ପାରିବେ କି ନାହିଁ ସେ ସଂପର୍କରେ ଆଲୋଚନା କରିବା ପାଇଁ। ଏଥିରେ ମଧ୍ୟ ଉଲ୍ଲେଖ ରହିଛି ଯେ ଆଲୋଚନା ଯେତେବେଳେ ଚାଲିଛି ସେତେବେଳେ ଟିସ୍କୋ ସହ ୨୭ ଜୁଲାଇରେ ବୁଝାମଣା ପତ୍ର ସ୍ୱାକ୍ଷରିତ ହୋଇଛି। ଏହି ଭିତ୍ତିପତ୍ରକୁ ବିଚାର କରାଗଲେ ଦେଖାଯିବ ଯେ ୨୭ ଜୁଲାଇର ବୁଝାମଣା ପତ୍ରକୁ କାର୍ଯ୍ୟକାରୀ କରିବା ସକାଶେ ଏହି ଭିତ୍ତିପତ୍ର ପ୍ରସ୍ତୁତ ହୋଇଛି।

ଅନ୍ୟ ପକ୍ଷରେ ଏହି ଭିତ୍ତିପତ୍ରରୁ ସ୍ପଷ୍ଟ ଜଣା ପଡୁଛି ଯେ ଚାର୍ଜକ୍ରୋମ କାରଖାନକୁ ୨୭ ଜୁଲାଇର ମେମୋ ଭିତ୍ତିରେ ବିକ୍ରୀ କରିବାରେ ବିଭିନ୍ନ ଜଟିଳତା ରହିଛି, ଯାହାକି ଭବିଷ୍ୟତରେ ସରକାର ଓ ଓଡ଼ିଶା ଖଣିନିଗମକୁ ଆର୍ଥିକ କ୍ଷତି ଆଣିବ। ଆଇନ ଦପ୍ତର, ଅର୍ଥ ଦପ୍ତର, ଶକ୍ତି ଦପ୍ତର, ସରକାରୀ ଉଦ୍ୟୋଗ ଦପ୍ତର, ଆଡ୍‌ଭୋକେଟ ଜେନେରାଲ ପ୍ରମୁଖ ଯେଉଁ ମତାମତସବୁ ଦେଇଛନ୍ତି ସେଗୁଡ଼ିକୁ ଯଦି ରାଜ୍ୟ ସରକାର ଗୁରୁତ୍ୱ ଦେଇଥାନ୍ତେ ତାହେଲେ ଚାର୍ଜକ୍ରୋମ କାରଖାନାକୁ ତରବରିଆ ଭାବେ ବିକ୍ରୀ କରିବାକୁ ଯାଇନଥାନ୍ତେ। (Para-୧୩)

## ସରକାରୀ ଅର୍ଡ଼ିନାନ୍ସ ଓ ଚାର୍ଜକ୍ରୋମ ବିକ୍ରୀ

ରାଜ୍ୟସରକାର ଖଣିନିଗମ ଅଧିନସ୍ଥ ଚାର୍ଜକ୍ରୋମ କାରଖାନାକୁ ହାତକୁ ନେଲେ ବୋଲି ଏକ ଅଧ୍ୟାଦେଶ ସରକାରଙ୍କ ଆଇନ ବିଭାଗ ପକ୍ଷରୁ ଓଡ଼ିଶା ଗେଜେଟ୍‌ରେ ୨୪ ସେପ୍ଟେମ୍ବର ୧୯୯୧ରେ ପ୍ରକାଶିତ ହେଲା। ଏହି ଅଧ୍ୟାଦେଶର ସାରାଂଶ ହେଲା:-(୧)ରାଜ୍ୟସରକାର ଚାର୍ଜକ୍ରୋମ ପ୍ଲାଣ୍ଟର ଦାୟିତ୍ୱ ଯେ କୌଣସି କଂପାନୀକୁ ଦେଇପାରିବେ। ରାଜ୍ୟସରକାର ଏହି କାରଖାନାର ସମସ୍ତ ଦେୟ ଗ୍ରହଣକଲେ।ଏହି ଅଧ୍ୟାଦେଶପରେ ସେପ୍ଟମ୍ବର ୨୭ ତାରିଖରେ ରାଜ୍ୟପାଳଙ୍କ ପ୍ରତିନିଧିତ୍ୱ କରି ରାଜ୍ୟସରକାରଙ୍କ ମୁଖ୍ୟ ସଚୀବ, ଇସ୍ପାତ ଓ ଖଣି ବିଭାଗ ଓ ଟିସକୋ ମଧ୍ୟରେ ଚାର୍ଜକ୍ରୋମ କାରଖାନା ବିକ୍ରୀ ସଂକ୍ରାନ୍ତରେ ଏକ ରାଜିନାମା ସ୍ୱାକ୍ଷରିତ ହେଲା।ଏହି ରାଜିନାମା ଅନୁଯାୟୀ ୧୫୬. ୨୩ କୋଟି ଟଙ୍କାର ସଂପତ୍ତି ଓ ୧୦୨.୮୮ କୋଟି ଟଙ୍କାର ବ୍ୟାଙ୍କ ଓ ଅନ୍ୟାନ୍ୟ ସଂସ୍ଥାର ଦେୟ ଦାୟିତ୍ୱ ଟିସ୍‌କୋ ଗ୍ରହଣ କଲା।ବ୍ୟାଙ୍କ ଦେୟ ଓ ଅନ୍ୟାନ୍ୟ ଦେୟକୁ ବାଦଦେଇ ଅବଶିଷ୍ଟ ୫୩.୩୫ କୋଟି ଟଙ୍କାକୁ ୧୫ ବର୍ଷରେ ସମାନ କିସ୍ତିରେ ଓ ବିନା ସୁଧରେ ଟିସ୍‌କୋ ପରିଶୋଧ କରିବ। ଏହି ଚୁକ୍ତିନାମାର ସାରାଂଶ ହେଲା(୨)ସରକାର ଚାର୍ଜକ୍ରୋମ ପ୍ଲାଣ୍ଟ ହସ୍ତାନ୍ତରକୁ କାର୍ଯ୍ୟକାରୀ କରିବା ସକାଶେ (କ) ସମସ୍ତ ସ୍ଥାବର ସଂପତ୍ତି (ଖ) ଅସ୍ଥାବର ସଂପତ୍ତି (ଗ)ସମସ୍ତ ଅଗ୍ରିମ ଓ ପ୍ରାପ୍ୟ ଓ କଂଚାମାଲ୍, ଯନ୍ତ୍ରାଂଶ, ଷ୍ଟୋର , ଟୁଲସ, ଯନ୍ତ୍ରପାତି, ଉତ୍ପାଦନ ପ୍ରକ୍ରିୟା ମଧ୍ୟରେ ଥିବା ଉତ୍ପାଦିତ ଦ୍ରବ୍ୟ, ଅର୍ଥ ଓ ବ୍ୟାଙ୍କଜମା , ବିନିଯୋଗ ପୁଂଜି ଓ ଅନ୍ୟାନ୍ୟ ସବୁ ଚଳନ୍ତି ସଂପତ୍ତି(ଘ) ସମସ୍ତ ସୁବିଧା ଅର୍ଥାତ ଲାଇସେନ୍ସ, ପରିମିଟ୍, ମଂଜୁରୀ, ସୁପାରିଶ, ପେଟେଣ୍ଟ, ଟ୍ରେଡ୍‌ମାର୍କ, ରେଜିଷ୍ଟ୍ରେଶନ ଓ ଅନ୍ୟାନ୍ୟ ସୁବିଧା ଯାହା ଚାର୍ଜକ୍ରୋମ କାରଖାନା ଅନ୍ତର୍ଭୁକ୍ତ ସେସବୁକୁ ଟିସ୍‌କୋ କଂପାନୀକୁ ହସ୍ତାନ୍ତର କରିବେ।

(୩) ରାଜିନାମା ଦେୟଠାରୁ ବେଶୀ ଦେୟ ପାଇଁ ଟିସ୍‌କୋ ଦାୟୀ ରହିବ ନାହିଁ। ଏହି ଦେୟ ଉପୁଜିଲେ ସରକାର ବହନ କରିବେ।

(୪) (କ)ଦୈବୀ ଦୁର୍ବିପାକ ବ୍ୟତିତ ଟାଟା କଂପାନୀ ଆଇନଗତ ଓ ପଦ୍ଧତିଗତ ସର୍ତ୍ତ ପୂରଣ କରିପାରୁଥିଲେ, ସରକାର ଅବିରାମଭାବେ ୩୫ ମେଗାୱାଟ ବିଜୁଳି ଶକ୍ତି ଯୋଗାଇବେ **ସର୍ବୋଚ୍ଚ ବିଦ୍ୟୁତଚାହିଦା ବେଳେ**(Peak load hour)୧୫ ମେଗାୱାଟ୍ ଯୋଗାଣ ହେବ। ଯଦି ବୈଧାନିକ ନିୟନ୍ତ୍ରଣ ଯୋଗୁ ରାଜ୍ୟ ବିଦ୍ୟୁତ ବୋର୍ଡ଼ ଏହି ପରିମାଣ ଶକ୍ତି ଯୋଗାଇ ନ ପାରେ ତେବେ ଟିସ୍‌କୋ ଅନ୍ୟସୂତ୍ରରୁ ତାହା କିଣିବ ଯାହାକୁ ରାଜ୍ୟ ବିଦ୍ୟୁତ ବୋର୍ଡ଼ ସରବରାହ କରିବେ।

(ଖ) ସରକାର ଏହି ରାଜିନାମାକୁ ଅନୁମୋଦନ କରି ଅଧ୍ୟାଦେଶ ଜାରୀ କରିବେ ଓ ଟିସ୍କୋକୁ ମାଲିକାନା ହସ୍ତାନ୍ତର କରିବେ।

(୫) ଠିକା ଶ୍ରମିକଙ୍କୁ ଛାଡ଼ି ଅନ୍ୟ କର୍ମଚାରୀମାନଙ୍କୁ ଟିସ୍କୋ ଗ୍ରହଣ କରିବ ଯେଉଁମାନେ ଟାଟାଷ୍ଟିଲ୍‌ର ୱାର୍କସ୍ ଷ୍ଟାଣ୍ଡିଂ ଅର୍ଡ଼ର ଦ୍ୱାରା ପରିଚାଳିତ ହେବେ।

(୬) ଟିସ୍କୋର ଦେୟ ଟ୧୦୨.୮୮ କୋଟିରେ ସୀମିତ ହେବ ଓ ଏହା ବ୍ୟତିତ ଯଦି କୌଣସି ଦେୟ ଦେବାକୁ ପଡ଼େ ତାହା ସରକାର ବହନ କରିବେ।ରାଜିନାମା କାର୍ଯ୍ୟକାରୀ ହେବା ତାରିଖ ପରେ ଯଦି ଚଳନ୍ତି ସଂପତ୍ତି ବାବଦରେ କୌଣସି ଅର୍ଥ ଆସେ ତାହା ଟିସ୍କୋ ପାଣ୍ଠିକ ଯିବ।

**(କ) କାରଖାନା ପରିଚାଳନା କ୍ଷେତ୍ରରେ ଓ ଚଳନ୍ତି ସଂପତ୍ତି ଆଦାୟ କ୍ଷେତ୍ରରେ କିମ୍ବା ଅନ୍ୟାନ୍ୟ କୌଣସି ବିବରଣୀ, ତଥ୍ୟ ଦଲିଲ ଟିସ୍କୋ ଚାହିଁଲେ ସରକାର ଯୋଗାଇ ଦେବେ।**

(୭) ଓଡ଼ିଶା ଖଣି ନିଗମ, ଓ.ଏମ୍. ସି. (ଆଇଏଚ୍) ବା ସରକାରଙ୍କ ଦ୍ୱାରା ପୂର୍ବରୁ ସଂପାଦିତ କୌଣସି ଚୁକ୍ତି ଏପରିକି ବାଣିଜ୍ୟିକ ଚୁକ୍ତିନାମାକୁ ଟିସ୍କୋ ଗ୍ରହଣ କରିବ ନାହିଁ। ଏହା ବାବଦରେ ଯେ କୌଣସି ଦେୟ ସରକାର ବହନ କରିବେ। (Agreement - ann- 4)

ଏହି ରାଜିନାମା ପରେ ରାଜ୍ୟସରକାର ସେହି ଦିନ ମାଲିକାନା ହସ୍ତାନ୍ତର ସଂକ୍ରାନ୍ତ ଆନୁସଂଗିକ ନୋଟିଫିକେଶନ ଗେଜେଟ୍‌ରେ ପ୍ରକାଶ କଲେ। ପୂର୍ବରୁ ଦର୍ଶାଯାଇଛି ଯେ ଚାର୍ଜକ୍ରୋମ ପ୍ଲାଣ୍ଟ ପ୍ରତିଷ୍ଠା ମୂଳରେ ରପ୍ତାନୀ ବାଣିଜ୍ୟ ମୂଳ ଉଦ୍ଦେଶ୍ୟ ଥିଲା। ଏହା ଦ୍ୱାରା ଆଜିକାର ଭାରତ ବର୍ଷରେ ବିରଳ ବସ୍ତୁ ଅର୍ଥାତ୍ ବୈଦେଶିକ ମୁଦ୍ରା ଅର୍ଜନ କରିବା ସମ୍ଭବ ହେଉଥିଲା। ଆମେ ଜାଣୁ ଯେ ଦିନକୁ ଦିନ ଆମର ଯେଭଳି ବିଦେଶୀ ମୁଦ୍ରା ସଂକଟ ଦେଖାଦେଇଛି, ସେଥିପାଇଁ ଅର୍ଥନୀତିକୁ ସଠିକ ରାସ୍ତାରେ ଚଳେଇବାକୁ ହେଲେ ବିଦେଶୀ ମୁଦ୍ରା ଅର୍ଜନ ଏକ ଅତୀବ ଜରୁରୀ ବିଷୟ। ଏହି ଦିଗରୁ ବିଚାର କଲେ ରାଜ୍ୟ ସରକାର ଏହି ମୁଦ୍ରା ଅର୍ଜନ ସକାଶେ ସମସ୍ତ ଉଦ୍ୟମ କରିବା କଥା ଓ ଚାର୍ଜକ୍ରୋମ କାରଖାନାର ପୁନରୁଦ୍ଧାର କରିବା କଥା ମାତ୍ର ଦୁର୍ଭାଗ୍ୟର ବିଷୟ ଯେ ଅତି ଶସ୍ତାରେ ନାମମାତ୍ର ଦାମରେ ଏହି କାରଖାନାକୁ ସରକାର ବିକ୍ରୀ କରିଦେଲେ। ଏ ପରିପ୍ରେକ୍ଷୀରେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉଠୁଛି।

(୧) କାରଖାନାର ପୁନରୁଦ୍ଧାର ସକାଶେ ବିଶେଷଜ୍ଞ କମିଟି ବସାଇ ପରାମର୍ଶ ଲୋଡ଼ାଯାଇ ପାରିଥାନ୍ତା। ଏହି ବିଶେଷଜ୍ଞ କମିଟି ବିଭିନ୍ନ ଦିଗରୁ ଅନୁସଂଧାନ କରି ଓ.ଏମ୍.ସି.(ଆଇଏଚ)ର ଭବିଷ୍ୟତ ପରିଚାଳନା ସଂପର୍କରେ ପରାମର୍ଶ ଦେଇ ପାରିଥାନ୍ତେ। ଏହି ପଦ୍ଧତି ସମସ୍ତ ସଭ୍ୟ ଦୁନିଆରେ ପ୍ରଚଳିତ। କିଂତୁ ଏ କ୍ଷେତ୍ରରେ ଯେହେତୁ ସରକାର କାରଖାନା ବିକ୍ରୀ କରିବାକୁ ବଦ୍ଧପରିକର ଥିଲେ, ତେଣୁ କୌଣସି ସତ୍ ଓ ଯୁକ୍ତି ଯୁକ୍ତ ପଦକ୍ଷେପ ଗ୍ରହଣ କରିନାହାନ୍ତି। ଏହା ପଛରେ କି ରହସ୍ୟ ରହିଛି? ଏହା ଦ୍ୱାରା ଯେଉଁ ପ୍ରଶ୍ନଟି ଅମୀମାଂସିତ ରହିଗଲା, ତାହାହେଲା ରାଷ୍ଟ୍ରର ସଂପତ୍ତିକୁ ସୁରକ୍ଷିତ କରିବା ସକାଶେ ସଂବିଧାନମତେ ଶପଥବଦ୍ଧ ଶାସକମାନେ କିଭଳି ଏହି ସୁଚତୁର କାରବାର କଲେ।

(୨) ଯେହେତୁ କୌଣସି ବିଶେଷଜ୍ଞ କମିଟି ସରକାର ବସାଇ ନାହାନ୍ତି ତେଣୁ ଏହି ସିଦ୍ଧାନ୍ତ ନିଆଯାଇ ପାରେ ଯେ କିଛି ପ୍ରଚ୍ଛନ୍ନ ଉଦ୍ଦେଶ୍ୟରେ ଏହି ବିକ୍ରୀ ତରବରିଆ ଭାବେ କରାଯାଇଛି। (Para- 18,19)

(୩) ଚାର୍ଜକ୍ରୋମ କାରଖାନା ବିକ୍ରୀସହ କ୍ରୋମାଇଟ ଖଣି ଲିଜ୍‌ର ନବୀକରଣ ପ୍ରଶ୍ନର କୌଣସି ସଂପର୍କ ନଥିବା ସତ୍ତ୍ୱେ ଜୁଲାଇ ୨୭ ତାରିଖ ମେମୋରେ କାରଖାନାଁ ବିକ୍ରୀର ଏକ ନିୟାମକ ସର୍ତ୍ତଭାବେ ଏହା ସ୍ଥାନ ପାଇବା ପଛରେ କି ରହସ୍ୟ ରହିଛି? ଓ.ଏମ.ସି.(ଆଇଏକ୍)କୁ ଯଦି ଏହି ଖଣି ଲିଜ୍ ଦିଆ ଯାଇଥାନ୍ତା ତେବେ ସରକାର ପ୍ରଚୁର ଲାଭ କରି ପାରିଥାନ୍ତେ ଓ ରାଜ୍ୟର ସ୍ୱାର୍ଥ ରକ୍ଷା ହୋଇ ପାରିଥାନ୍ତା। ଯଦି ଟାଟାର ନିଜସ୍ୱ ଚାହିଦା ସକାଶେ ଲିଜ୍ ଦରକାର ହେଉଥିଲା, ତେବେ ଓ.ଏମ୍.ସି ନିକଟରୁ ଏକ କ୍ଷୁଦ୍ର ଅଞ୍ଚଳ ଲିଜ୍ ନେଇ ପାରିଥାନ୍ତା।

ଭାରତ ସରକାରଙ୍କ ଭୂତତ୍ତ୍ୱ ବିଭାଗ ପକ୍ଷରୁ ୩୧-୩-୧୯୮୯ରେ ଯେଉଁ ରିପୋର୍ଟ ପ୍ରକାଶ ହୋଇଥିଲା, ସେଥିରୁ ଜଣାଯାଏ ଯେ ଦେଶର ସର୍ବମୋଟ ଗଚ୍ଛିତ କ୍ରୋମାଇଟ୍ ପରିମାଣ ହେଉଛି ୧୮୬ ନିୟୁତ ଟନ୍। ସେଥିମଧ୍ୟରୁ କେବଳ ଓଡ଼ିଶାରେ ଶତକଡ଼ା ୯୮.୬ ଭାଗ ଗଚ୍ଛିତ ଅଛି। ଟିସ୍କୋକୁ ଯେତିକି ଅଞ୍ଚଳ ଲିଜ୍ ଦେବାକୁ ସରକାର ରାଜି ହୋଇଛନ୍ତି ତାର ଗଚ୍ଛିତ କ୍ରୋମାଇଟ ପରିମାଣ ହେଲା ୧୧୮ ନିୟୁତ ଟନ୍ ଯାହାର ବଜାର ମୂଲ୍ୟ ୩୫,୪୦୦ କୋଟି ଟଙ୍କା। ଟିସ୍କୋ ଭଳି ଏକ ସର୍ବବୃହତ ଶିଳ୍ପପତି ପରିବାରକୁ ୩୫,୪୦୦ କୋଟି ଟଙ୍କାର ଅମୂଲ୍ୟ ଖଣିଜ ସଂପଦ ଲିଜ୍ ଦେବାଦ୍ୱାରା ରାଜ୍ୟର ଭବିଷ୍ୟତ ବିକାଶ ପଥକୁ ରୁଦ୍ଧ କରାଯାଇଛି। ଏହି କାର୍ଯ୍ୟଦ୍ୱାରା ବିଜୁପଟ୍ଟନାୟକଙ୍କ ଉପରେ ନ୍ୟସ୍ତ ସଂବିଧାନ ସମ୍ମତ ଦାୟିତ୍ୱ ପ୍ରତି ସେ ବିଶ୍ୱାସଘାତକତା କରିଛନ୍ତି। ସୁତରାଂ ଏହି କାରବାର ପଛରେ ସୁନିଶ୍ଚିତ ଭାବେ ପ୍ରଚ୍ଛନ୍ନ ରହସ୍ୟ ରହିଛି। ସରକାର ଯଦି ପ୍ରକୃତରେ ଲିଜ୍ ଦେବାକୁ ଚାହୁଁଥିଲେ ତାହେଲେ ଏହାକୁ ଟେଣ୍ଡର କରି ଅଧିକ ପ୍ରତିଦ୍ୱନ୍ଦିତା ମୂଳକ କରି ପାରିଥାନ୍ତେ। କିନ୍ତୁ ଏହା ନକରି ଜଣେ ସର୍ବବୃହତ ଏକଚାଟିଆ ଶିଳ୍ପ ପରିବାରକୁ ଖଣିର ଏକ ଚାଟିଆ କାରବାର ପାଇଁ ସୁଯୋଗ ଦେବା ମୂଳରେ କି ରହସ୍ୟ ରହିଛି? ଯେତେବେଳେ ଏକଚାଟିଆ କାରବାରକୁ ରୋକିବା ସକାଶେ ରାଷ୍ଟ୍ର ଆଇନ ପ୍ରଣୟନ କରୁଛି, ସେତେବେଳେ ରାଷ୍ଟ୍ରର ରକ୍ଷକମାନେ ଆଇନକୁ ନିଜେ ଲଂଘନ କରିବା ପଛରେ କି ରହସ୍ୟ ରହିଛି ?Para-44)

(୪) ଯଦି ସରକାରଂଙ୍କ ଯୁକ୍ତିକୁ ଗ୍ରହଣ କରାଯାଏ ଯେ ଚାର୍ଜକ୍ରୋମ କାରଖାନାକୁ କ୍ଷତିରୁ ରକ୍ଷା କରିବାକୁ ହେଲେ ବିକ୍ରୀ ଛଡ଼ା ବିକଳ୍ପ ପନ୍ଥା ନଥିଲା, ତାହେଲେ ବିନା ଟେଣ୍ଡରରେ ଏହା କିପରି ବିକ୍ରୀ ହେଲା? ସରକାର କାହିଁକି ଏ କ୍ଷେତ୍ରରେ ଆଇନ ବହିର୍ଭୂତ ପନ୍ଥା ଗ୍ରହଣ କଲେ? ଏପରିକି ଯେତେବେଳେ ଆଇପିନ୍ କିଣା ବା ଅଦରକାରୀ କାଗଜ ବିକ୍ରୀ ସକାଶେ ଟେଣ୍ଡର ଆହ୍ୱାନ କରାଯାଉଛି, ସେତେବେଳେ ଚାର୍ଜକ୍ରୋମ ଭଳି ଏକ ଗୁରୁତ୍ୱପୂର୍ଣ୍ଣ ଶିଳ୍ପ ବିକ୍ରୀବେଳେ କାହିଁକି ଏହି ପନ୍ଥା ଗ୍ରହଣ କରାଗଲା ନାହିଁ?

(୫) ଅନ୍ୟଏକ ଗୁରୁତ୍ୱପୂର୍ଣ୍ଣ ଦିଗହେଲା ଏହି କାରଖାନା ବିକ୍ରୀବେଳେ ଶ୍ରମିକମାନଙ୍କ ସହ ଆଲୋଚନା ହୋଇନାହିଁ। ଶ୍ରମିକମାନେ ହେଉଛନ୍ତି କାରଖାନାର ଏକ ଅବିଚ୍ଛେଦ୍ୟ ଅଂଗ। ସେମାନଂକୁ ସରକାର ବିଶ୍ୱାସ ମଧ୍ୟକୁ ନେଇ ପାରିଥାନ୍ତେ ଓ ସେମାନଂକ ଦ୍ୱାରା କାରଖାନା ପରିଚାଳନାରେ ସୁଯୋଗ ଦେଇ ପାରିଥାନ୍ତେ। ଏହାଦ୍ୱାରା ରାଜ୍ୟର ସ୍ୱାର୍ଥ ଓ ଜନସ୍ୱାର୍ଥ ସୁରକ୍ଷିତ ହୋଇ ପାରିଥାନ୍ତା ଓ ସରକାରଂଙ୍କ କ୍ରିୟା ସଂଦେହ ପରିସର ମଧ୍ୟକୁ ଆସି ନଥାନ୍ତା। ମାତ୍ର ସରକାର ବୋଧେ ଟିସ୍କୋକୁ ଫୋପାଡ଼ିବା ମୂଲ୍ୟରେ ବିକ୍ରି କରିବା ସକାଶେ ବଦ୍ଧପରିକର ଥିଲେ, ତେଣୁ ଶ୍ରମିକମାନଙ୍କୁ ସାଂବିଧାନିକ ଅଧିକାର ଦେଇ ନାହାନ୍ତି (para-32)

(୬) ୧୯ ସେପ୍ଟେମ୍ବର ଭିତ୍ତିପତ୍ରରୁ ସ୍ପଷ୍ଟଯେ ସରକାର ସଂପୂର୍ଣ୍ଣ ପଦ୍ଧତି ଗ୍ରହଣ ନକରି ଏହା

ବିକ୍ରୀ କରିଦେଲେ। ସେହି ରିପୋର୍ଟ ସ୍ପଷ୍ଟ ପ୍ରମାଣ କରୁଛି ଯେ ବିକ୍ରୀ ସଂପର୍କରେ ବିଭିନ୍ନ ବିଭାଗର ମତ ମଧ୍ୟରେ ବିଭିନ୍ନତା ଥିବା ସତ୍ତ୍ୱେ ସରକାର ସେସବୁକୁ ଗୁରୁତ୍ୱ ଦେଇ ନାହାନ୍ତି। ଯେକୌଣସି ପ୍ରକାରେ କାରଖାନାକୁ ବିକ୍ରୀ କରିବାକୁ ଅଗ୍ରସର ହୋଇଛନ୍ତି। ଏଥିରୁ ଜଣା ପଡୁଛି କେଉଁ ଅଜଣା ହାତ ଓ ଅଜଣା ଉଦ୍ଦେଶ୍ୟରେ କାରଖାନା ବିକ୍ରି ହୋଇଛି।

## ରିଟ୍‌ର କେତେକ ଗୁରୁତ୍ୱପୂର୍ଣ୍ଣ ଯୁକ୍ତି

ରାଜ୍ୟ ସରକାରଂକ ଟିସ୍‌କୋକୁ ଚାର୍ଜକ୍ରୋମ ପ୍ଲାଣ୍ଟ ହସ୍ତାନ୍ତର ସଂବିଧାନର ମୁଖବନ୍ଧର ପରିପନ୍ଥୀ। କାରଣ ଏହି ବିକ୍ରୀର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଏକ ବୃହତ୍ ଶିଳ୍ପପତିଙ୍କୁ ସମୃଦ୍ଧ କରାଇବା ଯାହାକି ସାମାଜିକ ସ୍ୱାର୍ଥର ପରିପନ୍ଥୀ। (Para - 41)

ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟମନ୍ତ୍ରୀମାନେ ନିଜସ୍ୱ ପଦବୀର ଅବମାନନା କରିଛନ୍ତି ଯାହାକି ସଂବିଧାନର ତୃତୀୟ ପରିଚ୍ଛେଦରେ ରହିଛି। କାରଣ ସେମାନେ ଟିସ୍‌କୋ ପ୍ରତି ଅନୁକଂପା ପ୍ରଦର୍ଶନ କରିଛନ୍ତି ଓ ଏହା କଲାବେଳେ ସଂବିଧାନ ଅନୁଯାୟୀ କାର୍ଯ୍ୟ କରିନାହାନ୍ତି।

ସରକାରୀ କର୍ମଚାରୀମାନେ ସେମାନଂକର ଅଧିକାର ପରିସର ବାହାରକୁ ଯାଇ ଏକ ବେଆଇନ କାରବାରରେ ସଂପୃକ୍ତ ହେବା ଦ୍ୱାରା ସେମାନେ ସରକାରୀ କର୍ମଚାରୀ ଭାବେ ଦାୟିତ୍ୱର ଖିଲାପ କରିଛନ୍ତି। ସୁତରାଂ ସେମାନଂକ ପ୍ରତି ଲାଗୁ ହେଉଥିବା ଚାକିରୀ ନିୟମାବଳୀ ଅନୁଯାୟୀ ସେମାନେ ଆଚରଣ କରି ନାହାନ୍ତି।

ମୁଖ୍ୟମନ୍ତ୍ରୀଙ୍କ ମୁଖ୍ୟ ସଚୀବ ଓ ସରକାରୀ ଉଦ୍ୟୋଗ ରାଷ୍ଟ୍ରମନ୍ତ୍ରୀଙ୍କ ମୁଖ୍ୟ ସଚୀବଙ୍କ ନିକଟ ଆତ୍ମୀୟ ଟିସ୍‌କୋ କଂପାନୀରେ ଚାକିରୀ କରିଛନ୍ତି ଏବଂ ସେଥିପାଇଁ ଏହି କାରବାରରେ ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ରହିଛି।

ସାଂବିଧାନିକ ପଦବୀର ଅଧିକାରୀ ହୋଇଥିବା ସତ୍ତ୍ୱେ ଆଡ୍‌ଭୋକେଟ୍ ଜେନେରାଲ ରାଜ୍ୟ ସରକାରଂକୁ ଉପଦେଶ ଦେବା ଓ ରାଜ୍ୟର ସ୍ୱାର୍ଥକୁ ସଚ୍ଚୋଟଭାବେ ରକ୍ଷା କରିବାରେ ବିଫଳ ହୋଇଥିବାରୁ ସେ ଏଭଳି ଏକ ପଦବୀରେ ରହିବାର ଯୋଗ୍ୟତା ହରାଇଛନ୍ତି।(Para - 41)

ଯେଉଁ ସବୁ ତଥ୍ୟ ଓ ପରିସ୍ଥିତି ଉପରେ ବର୍ଣ୍ଣନା କରାଗଲା ସେଥିରୁ ସ୍ପଷ୍ଟ ପ୍ରମାଣିତ ଯେ ଚାର୍ଜକ୍ରୋମ ବିକ୍ରୀ କାରବାରଟି ହେଉଛି ସଂପୂର୍ଣ୍ଣ ଏକ ଜାଲ କାରବାର ଏବଂ ଟିସ୍‌କୋ କଂପାନୀକୁ ଆର୍ଥିକ ଫାଇଦା ହାସଲର ସୁଯୋଗ ଦେବାକୁ ଏ କ୍ଷେତ୍ରରେ ସମସ୍ତ ନୀତିକୁ ଜଳାଞ୍ଜଳି ଦିଆ ଯାଇଛି। ଏହି ବିକ୍ରି ହେଉଛି ପ୍ରାକ୍ ନିର୍ଦ୍ଧାରିତ ପୂର୍ବ ପରିକଳ୍ପିତ ଓ ଜନଗଣଙ୍କୁ ବୋକା ବନେଇବା, ସକାଶେ ଅବଶିଷ୍ଟ କସରତ କରାଯାଇଛି। (para-51)

ରାଜ୍ୟର ସଂପତ୍ତିକୁ ଅପଚୟ କରିବା ସକାଶେ ପ୍ରତିବାଦୀ ନଂ-୨ ରୁ ୧୨ ଏବଂ ୧୮,୧୯ (ମୁଖ୍ୟମନ୍ତ୍ରୀ ଅନ୍ୟାନ୍ୟ ମନ୍ତ୍ରୀ ଓ ସରକାରୀ ଅଫିସର) ପ୍ରତିବାଦୀ ନଂ- ୧୪ ରୁ ୧୭ (ଟିସ୍‌କୋ କର୍ମକର୍ତ୍ତାବୃନ୍ଦ)ଙ୍କ ସହ ଷଡ଼ଯନ୍ତ୍ରରେ ଲିପ୍ତ ହୋଇଛନ୍ତି ଓ ଏହାଦ୍ୱାରା ଟିସ୍‌କୋର ଅନ୍ୟାୟ ଭାବେ ଫାଇଦା ହୋଇଛି ଏବଂ ରାଜ୍ୟ ରାଜକୋଷର ଅନ୍ୟାୟଭାବେ କ୍ଷତି ଘଟିଛି।(Para - 52)

ଆବେଦନ କାରୀ ଗଭୀର ଉଦ୍‌ବେଗର ସହ ମାନ୍ୟବର ହାଇକୋର୍ଟ ନିକଟରେ ବିନୀତ ପ୍ରାର୍ଥନା କରେ କି-:

(କ) ବୁଝାମଣା ପତ୍ର ଓ ଅନ୍ୟାନ୍ୟ ଦଲିଲ ଯାହାକି ବିଜୁପଟ୍ଟନାୟକ ଓ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ସୃଷ୍ଟି ହୋଇଛି ଓ ଯାହାକି ତାଂକର ମାନସ ପ୍ରସୂତ, ସେହି ସବୁର ଯୌକ୍ତିକତା, ନ୍ୟାୟିକତା ଏବଂ ପ୍ରତିବାଦୀମାନଂକର ବିଶେଷ କରି ପ୍ରତିବାଦୀ ବିଜୁପଟ୍ଟନାୟକ ଓ ମୁଖ୍ୟ ମନ୍ତ୍ରୀ ବିଜୁପଟ୍ଟନାୟକଙ୍କର କ୍ଷମତା ରହିଛି କି ନାହିଁ, ସେ ସଂପର୍କରେ ମାନ୍ୟବର ହାଇ କୋର୍ଟ ଦୃଢ଼ ନିଷ୍ପତ୍ତି ଗ୍ରହଣ କରନ୍ତୁ;

(ଖ) ୧୯୫୬ ମସିହା ଶିଳ୍ପ ନୀତିର ଉଲଂଘନ କରି ସରକାରୀ ଉଦ୍ୟୋଗ ଓ ସମବାୟ ଉଦ୍ୟୋଗଗୁଡ଼ିକୁ ଘରୋଇ କରଣ କରିବାର ଯୌକ୍ତିକତା, ନ୍ୟାୟିକତା ଏବଂ ପ୍ରତିବାଦୀଙ୍କର କ୍ଷମତା ରହିଛି କି ନାହିଁ ସେ ସଂପର୍କରେ ମାନ୍ୟବର ହାଇକୋର୍ଟ ଦୃଢ଼ ନିଷ୍ପତ୍ତି ଗ୍ରହଣ କରନ୍ତୁ ;

(ଗ) ଓ.ଏମ୍.ସି. (ଆଲଏଲ୍)କୁ ଟିସ୍‌କୋକୁ ବିକ୍ରୀ କରିବା ସହିତ କ୍ରୋମାଇଟ୍ ଖଣି ଲିଜ୍‌ର କୌଣସି ସଂପର୍କ ନଥିବା ବେଳେ ଏହି ଦୁର୍ଲଭ ଖଣିଜ ସଂପଦ କ୍ରୋମାଇଟ୍ ପଥରର ଅଧିକାଂଶକୁ ତୃତୀୟ ଥର ସକାଶେ ଲିଜ୍ ଦେବାକୁ ସୁପାରିଶ କରିବା (ଯାହାକି ଟିସ୍‌କୋର ୬୦ ବର୍ଷ ବ୍ୟାପୀ ଲିଜ ହେବ) ଅଧିକାର, କ୍ଷମତା ଓ ଯୌକ୍ତିକତା ସଂପର୍କରେ ଦୃଢ଼ ନିଷ୍ପତ୍ତି ଗ୍ରହଣ କରନ୍ତୁ ଓ ଏହା ସାଂଗକୁ ଉପରୋକ୍ତ ଗୁପ୍ତ କାରବାରର ମତଲବ ଓ ଉଦ୍ଦେଶ୍ୟ କ'ଣ ହୋଇପାରେ ସେ ସଂପର୍କରେ ରାୟ ମଧ୍ୟ ଘୋଷଣା କରନ୍ତୁ। **(para-60)**

## ରହିତାଦେଶ ଓ ନିଷେଧାଜ୍ଞା ପାଇଁ ଆବେଦନ

ଆବେଦନକାରୀ ଶ୍ରୀ ମାୟାଧର ନାୟକ ଏହି ଜନସ୍ୱାର୍ଥ ମାମଲା ଦାଏର କରିବା ସଙ୍ଗେ ସଙ୍ଗେ ରହିତାଦେଶ ଓ ନିଷେଧାଜ୍ଞା ଜାରୀ ପାଇଁ ମାନ୍ୟବର ହାଇକୋର୍ଟ ନିକଟରେ ୨ଟି ଆବେଦନ ମଧ୍ୟ ଆବେଦନ କରିଛନ୍ତି।

ନ୍ୟାୟ, ସମ୍ମାନତା, ସୁବିଚାର ସ୍ୱାର୍ଥରେ ସେପ୍ଟେମ୍ବର ୨୭, ୧୯୯୧ର ଚୁକ୍ତିନାମା ଓ ସେପ୍ଟେମ୍ବର ୨୭, ୧୯୯୧ର ନୋଟିଫିକେସନ୍‌କୁ ରିଟ୍‌ର ଫଇସଲା ପର୍ଯ୍ୟନ୍ତ ସ୍ଥଗିତ କରାଯିବା ଉଚିତ୍ ।(Para - 4, Stay application )

ଏହି ପରିପ୍ରେକ୍ଷୀରେ ଆବେଦନକାରୀ ମାନ୍ୟବର ହାଇକୋର୍ଟ ନିକଟରେ ବିନମ୍ର ପ୍ରାର୍ଥନା କରେକି ସେପ୍ଟେମ୍ବର ୨୭, ୧୯୯୧ର ଚୁକ୍ତିନାମା ଓ ନୋଟିଫିକେସନ୍‌କୁ ରିଟ୍‌ର ଫଇସଲା ପର୍ଯ୍ୟନ୍ତ ଅକାମୀ ରଖିବା ସକାଶେ ମାନ୍ୟବର ହାଇକୋର୍ଟ ସୁବିଚାର କରନ୍ତୁ।

# ଖଣି ଲିଜ୍ ଉପରେ ନିଷେଧାଜ୍ଞା ପାଇଁ ଆବେଦନ

ସରକାର ଯେହେତୁ ଖଣି ଲିଜ୍‌ର ଦ୍ୱିତୀୟ ନବୀକରଣ ପାଇଁ ବାଧ୍ୟ ନୁହଁନ୍ତି (ତୃୟ ଥର ପାଇଁ ଲିଜ୍- ସମୁଦାୟ ସମୟ ସୀମା ୬୦ ବର୍ଷ ) ତେଣୁ ଟିସ୍‌କୋର ସମୁଦାୟ କ୍ରୋମାଇଟ୍ ଖଣି ଲିଜ୍‌କୁ ନବୀକରଣ ମଞ୍ଜୁର କରାଯାଇ ପାରିବ ନାହିଁ। ପ୍ରତ୍ୟେକଟି ଲିଜ୍ ଆବେଦନ ଏହାର ଯୋଗ୍ୟତା ଉପରେ ବିଚାର ହେବା ଉଚିତ୍। ସମସ୍ତ ପ୍ରତିଦ୍ୱନ୍ଦ୍ୱୀଙ୍କ ସକାଶେ ଲିଜ୍ ମଞ୍ଜୁର ଖୋଲା ରହିବା ଉଚିତ୍ ଓ ରାଜ୍ୟ ସରକାର ଏକ ନିର୍ଦ୍ଦିଷ୍ଟ ବ୍ୟବସାୟୀ ପରିବାରକୁ ଏକ ଚାଟିଆ ଅଧିକାର ଦେବା ଉଚିତ୍ ନୁହେଁ। ବିଶେଷ କରି ରାଜ୍ୟ ସରକାର ଯେତେବେଳେ ଏହି ଖଣିର ମାଲିକ ଓ ତାଙ୍କର ରାଷ୍ଟ୍ରାୟତ ସଂସ୍ଥା ରହିଛି ସେତେବେଳେ ରାଜ୍ୟ ଓ ଏହାର ଜନଗଣଙ୍କ ମଙ୍ଗଳ ସକାଶେ ଏହି ଖଣି ବିନିଯୋଗ ହେବା ଉଚିତ୍। (para -4, Application for injunction)

ଖଣି ଲିଜ୍‌କୁ ନବୀକରଣ କରିବା ସକାଶେ ଟାଟା କଂପାନୀର ତା ୨୯.୯.୯୧ର ଆବେଦନ କେନ୍ଦ୍ରସରକାରଙ୍କ ଅନୁମୋଦନ ସକାଶେ ବିଚାରାଧିନ ରହିଛି ଓ ତା ୨୭.୯.୯୧ର ଚୁକ୍ତିନାମା ଯୋଗୁଁ ରାଜ୍ୟ ସରକାର ଖଣିଲିଜ୍ ନବୀକରଣ ସକାଶେ ସୁପାରିଶ୍ କରିବାକୁ ଆଇନତଃ ବାଧ୍ୟ।( para- 5 ibid)

ଚାର୍ଜକ୍ରୋମ ପ୍ଲାଣ୍ଟର ପରିଚାଳନା ସହ ସମୁଦାୟ କ୍ରୋମାଇଟ୍ ଖଣି ଲିଜ୍ ନବୀକରଣର କୌଣସି ସମ୍ପର୍କ ନ ଥିବାରୁ କାରଖାନା ବିକ୍ରୀର ଏକ ଅଂଶଭାବେ ଏହି ଖଣିଲିଜ୍ ଯୋଡ଼ାଯାଇ ପାରିବ ନାହିଁ। ( Para -6, ibid)

ରାଜ୍ୟସରକାର ଖଣିର ମାଲିକ ଓ ଲାଇସେନ୍‌ସ୍ ଅଥରିଟି ହୋଇଥିବାରୁ ଟିସ୍‌କୋ କମ୍ପାନୀ ସପକ୍ଷରେ ଲିଜ୍ ନବୀକରଣ କରିବା ପାଇଁ କେନ୍ଦ୍ର ସରକାରଙ୍କୁ ବାଧ୍ୟ କରିବା ଅନୁଚିତ୍। (Para - 7, ibid)

ସମୁଦାୟ ବିକ୍ରୀକୁ ଯେତେବେଳେ ଚାଲେଞ୍ଜ୍ କରାଯାଇଛି ଏଣୁ ଏହି କାରବାରର ଏକ ଅଙ୍ଗ ହୋଇଥିବା ଲିଜ୍ ନବୀକରଣକୁ ଅକାମୀ କରାଯିବା ଉଚିତ୍।(para - 8, ibid )

ଟାଟା କମ୍ପାନୀକୁ ଅନୁମୋଦନ ମଞ୍ଜୁର କରିବା ଓ ଲିଜ୍ ଦେବା କ୍ଷେତ୍ରରେ କେନ୍ଦ୍ରସରକାର ଓ ରାଜ୍ୟସରକାରଙ୍କୁ ନିଷେଧାଜ୍ଞାଜାରୀ ନ କଲେ ରାଜ୍ୟ ରାଜକୋଷର ବିପୁଳ କ୍ଷତି ସାଧନ ହେବ ଓ ଏହା ଦ୍ୱାରା ରାଜ୍ୟ ତଥା ଜନଗଣଙ୍କ ଅପରିମାଣ କ୍ଷତି ସାଧନ ହେବ।( Para- 9, ibid )

ରିଟ୍ ଆବେଦନର ଫଇସଲା ପର୍ଯ୍ୟନ୍ତ ନିଷେଧାଜ୍ଞାଜାରୀ ସକାଶେ ଉପଯୁକ୍ତ କାରଣ ରହିଛି।

ଏହି ପରିପ୍ରେକ୍ଷୀରେ ମାନ୍ୟବର ହାଇକୋର୍ଟ ନିକଟରେ ଆବେଦନକାରୀ ବିନମ୍ର ନିବେଦନ କରେକି ମାନ୍ୟବର ହାଇକୋର୍ଟ ଦୟାପରବଶ ହୋଇ ମକଦ୍ଦମାର ଫଇସଲା ପର୍ଯ୍ୟନ୍ତ ଟାଟା କମ୍ପାନୀର ଖଣିଲିଜ୍ ନବୀକରଣ ଯେପରି ମଞ୍ଜୁର ନ ହୁଏ ସେଥିପାଇଁ କେନ୍ଦ୍ର ଓ ରାଜ୍ୟସରକାରଙ୍କ ଉପରେ ନିଷେଧାଜ୍ଞାଜାରୀ କଲେ ଆବେଦନକାରୀ କୃତଜ୍ଞ ହୁଅନ୍ତେ।

•ବିଜୁ ପଟ୍ଟନାୟକ- ଋଷି ମୋଦୀ •

# ଚାର୍ଜକ୍ରୋମ କାରଖାନା ବିକାକିଣାର ଗୁପ୍ତ ରହସ୍ୟ

ମାୟାଧର ନାୟକ (ଏସ.ୟୁ.ସି.ଆଇ)

ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନା ବିକ୍ରି-ଖରିଦ କାରବାରରେ ରାଜ୍ୟ ସରକାର ଓ ଟାଟା କମ୍ପାନୀ ବେଆଇନ୍‌ଭାବେ ଜଡ଼ିତ ରାଜ୍ୟ ଓଡ଼ିଶାର ସମ୍ପତ୍ତିକୁ ଲୁଟ ଚୋରି କରିନେଇଛନ୍ତି। ଏହି କାରବାରରେ ରାଜ୍ୟ ସରକାରଙ୍କ ସହ ଟାଟା କମ୍ପାନୀର ହୋଇଥିବା ଚୁକ୍ତି ସମ୍ପର୍କରେ ରାଜ୍ୟବାସୀ ଏ ପର୍ଯ୍ୟନ୍ତ ଅନ୍ଧକାର ମଧ୍ୟରେ ରହିଛନ୍ତି। କ୍ରୟ-ବିକ୍ରୟ ସମ୍ପର୍କୀୟ କାଗଜ-ପତ୍ର ଏ ପର୍ଯ୍ୟନ୍ତ ଜନସାଧାରଣଙ୍କ ଗୋଚରାର୍ଥେ ପ୍ରକାଶ କରାଯାଇନାହିଁ। ରାଜ୍ୟ ତଥା ଦେଶର ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନା ଏକମାତ୍ର ସରକାରୀ ଚାର୍ଜକ୍ରୋମ ଶିଳ୍ପ। ଏହି କାରଖାନା ବିକ୍ରି କାରବାରରେ ରାଜ୍ୟ ସରକାର ସମସ୍ତ ପ୍ରକାର ଆଇନକାନୁନ ଲଙ୍ଘନ କରିଛନ୍ତି।

ରାଜ୍ୟ ସରକାର ଓ ଟାଟା କମ୍ପାନୀ ମଧ୍ୟରେ କାରଖାନା ବିକ୍ରି-କ୍ରୟ ସମ୍ପର୍କୀୟ ଅତୀବ ଗୋପନୀୟ ଦଲିଲପତ୍ରରେ ବହୁ ଅପମାନଜନକ ସର୍ତ୍ତ ରହିଛି ବୋଲି ବିଶ୍ୱସ୍ତ ସୂତ୍ରରୁ ଜଣାପଡ଼ିଛି। ରାଜ୍ୟ ସରକାରଙ୍କ ସହ କେନ୍ଦ୍ରର ଆଇ.ଏ.ଏସ ଅଫିସର ଓଡ଼ିଶାର ପ୍ରାକୃତିକ ସମ୍ପତ୍ତିକୁ ଭାରତର ସର୍ବଶ୍ରେଷ୍ଠ ଏକଚାଟିଆ ପୁଞ୍ଜିପତି ଟାଟା କମ୍ପାନୀ ହାତରେ ସମର୍ପଣ କରିଦେଇଛନ୍ତି। ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତକୁ ବ୍ୟବସାୟ କରିବାକୁ ଆସି ଯେପରି ଭାବେ ୨୦୦ ବର୍ଷ ଧରି ଭାରତକୁ ଗୋଲାମ କରି ରଖିଥିଲା, ସେହିପରି ଭାବେ ଟାଟା କମ୍ପାନୀ ବ୍ୟବସାୟ ବାହାନାରେ ଓଡ଼ିଶାକୁ ତା'ର କଲୋନୀ କରିବାକୁ ଯାଉଛି।

ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓ ଟାଟା କମ୍ପାନୀ ମୁଖ୍ୟ ଋଷି ମୋଦୀଙ୍କ ଚାର୍ଜକ୍ରୋମ କାରଖାନା କିଣାବିକା ଦୁର୍ନୀତି କାରବାରକୁ ନିମ୍ନଲିଖିତ ତଥ୍ୟ ଜଣାପଡ଼ିଛି ଯେ- ଗତ ଜୁଲାଇ ୨୨ ତାରିଖରେ ଚାର୍ଜକ୍ରୋମ କାରଖାନା ବିକ୍ରି ପାଇଁ ହୋଇଥିବା ମେମୋରାଣ୍ଡମ୍ ଅଫ୍ ଅଣ୍ଡରଷ୍ଟାଣ୍ଡିଂ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ଅର୍ଥମନ୍ତ୍ରୀ ଶ୍ରୀ ବେଦପ୍ରକାଶ ଅଗ୍ରୱାଲ ଏବଂ ଟିସ୍କୋ ଚେୟାରମ୍ୟାନ- ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଋଷିମୋଦୀ ଦସ୍ତଖତ କରିଥିଲେ। ରାଜ୍ୟ ସରକାରଙ୍କ ବିଜ୍ଞାପିତ ପ୍ରଥା ଓ ଆଇନ ଅନୁଯାୟୀ କୌଣସି ବ୍ୟବସାୟୀ ସହ କିଣାବିକା କାରବାରରେ କୌଣସି ମନ୍ତ୍ରୀ ଦସ୍ତଖତ କରିବା ପ୍ରଥା ନାହିଁ। ଜୁଲାଇ ୨୨ ତାରିଖରେ ଚାର୍ଜକ୍ରୋମ କାରଖାନା ମାଲିକାନା ବାବଦରେ ଥିବା ଓ.ଏମ.ସି. (ଆଲୟେଜ) ଲିମିଟେଡ, ଚେୟାରମ୍ୟାନ ତଥା ପରିଚାଳନା ନିର୍ଦ୍ଦେଶକ ଏବଂ ସରକାରଙ୍କ ଶିଳ୍ପ ଓ ଖଣିବିଭାଗ ସଚିବଙ୍କ ଦସ୍ତଖତ ଏଥିରେ ରହିବା କଥା। ମୁଖ୍ୟମନ୍ତ୍ରୀଙ୍କର ଏହି ଜଡ଼ିତ ଦୁର୍ନୀତି କାରବାରକୁ ଲୁଚେଇବା ପାଇଁ ଗତ ଅଗଷ୍ଟ ୩୦ ତାରିଖରେ ଓ.ଏମ.ସି. (ଆଲୟେଜ)କୁ ଓ.ଏମ.ସି. ଲିମିଟେଡ ସହିତ ମିଶାଇ ଦିଆଗଲା। ପୁନଶ୍ଚ ମୁଖ୍ୟମନ୍ତ୍ରୀ ସେପ୍ଟେମ୍ବର ୨୩ ତାରିଖରେ ବହୁ ବିରୋଧ ସତ୍ତ୍ୱେ କ୍ୟାବିନେଟ ମନ୍ତ୍ରୀମାନଙ୍କ ଠାରୁ ଚାର୍ଜକ୍ରୋମ କାରଖାନା ବିକ୍ରି ପାଇଁ ସ୍ୱୀକୃତି ନେଇଥିଲେ ଏବଂ ସେପ୍ଟେମ୍ବର ୨୪ ତାରିଖରେ ରାଜ୍ୟ ସରକାର ରାଜ୍ୟପାଳଙ୍କ ଦ୍ୱାରା ଅର୍ଡିନାନ୍ସ ଜାରି କରି ଓଡ଼ିଶା ଖଣି ନିଗମ ଚାର୍ଜକ୍ରୋମ ପ୍ରକଳ୍ପ ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତିକୁ ନିଜ ହାତକୁ ନେଲେ ସେପ୍ଟେମ୍ବର ୨୫ ତାରିଖରେ ଟାଟା କମ୍ପାନୀକୁ କାରଖାନା ସମର୍ପଣ କଲେ। ଏହି ସମସ୍ତ କାର୍ଯ୍ୟ ଅତୀବ ଗୁପ୍ତ ଓ ତତ୍ପରତା ଭାବେ କରାଯାଇଛି।

ଏହି ଲୁଚାଛପା ବିକ୍ରି ବ୍ୟାପାରରେ ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ଠାରୁ ଟାଟା କମ୍ପାନୀର ମୁଖ୍ୟ ଶ୍ରୀ ଋଷିମୋଦୀ ନିମ୍ନଲିଖିତ ଅପମାନଜନକ ସର୍ତ୍ତ ଲେଖାଇ ନେଇଛନ୍ତି।

(୧) ଟିସ୍କୋ ଚାର୍ଜକ୍ରୋମ କାରଖାନା କିଣିବା ସହ ରାଜ୍ୟ ସରକାର ୧୯୯୩ ମସିହା ମାର୍ଚ୍ଚ ମାସରେ ଅବଧି ଶେଷ ହେଉଥିବା ଟିସ୍କୋର ସୁକିନ୍ଦା କ୍ରୋମାଇଟ୍ ଖଣି ଲିଜ୍ ପୁନଃ ନବୀକରଣ କରାଯିବ। ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏସିଆ ମହାଦେଶର ୯୫ ଭାଗ କ୍ରୋମାଇଟ ସୁକିନ୍ଦା ଉପତ୍ୟକାରେ ସଞ୍ଚିତ ଅଛି। ସେହି ୯୫ ଭାଗରୁ ୮୦ ଭାଗ ସଞ୍ଚିତ ଥିବା ୩୧୬୬ ଏକର ଅଂଚଳ ଟିସ୍କୋ ସ୍ୱାଧୀନତା ପୂର୍ବ ଠାରୁ ଲଗାତାର ପ୍ରାୟ ୫୦ ବର୍ଷ ଧରି କ୍ରୋମାଇଟ ଖୋଳି ଦେଶ ବିଦେଶର ବିଭିନ୍ନ କଳ କାରଖାନାକୁ ବିକ୍ରି କରିବା ସଙ୍ଗେ ସଙ୍ଗେ ଆସନ୍ତା ଦଶବର୍ଷ ପାଇଁ ଆମେରିକାକୁ ଏ ଅପର୍ଯ୍ୟାପ୍ତ କ୍ରୋମାଇଟ ରପ୍ତାନି କରିଛି। ଯାହା ଜଣାପଡ଼ିଛି ବର୍ତ୍ତମାନ ବର୍ଷକୁ ଟିସ୍କୋ ୪୦୦ କୋଟି ଟଙ୍କା କ୍ରୋମାଇଟ ରପ୍ତାନିରୁ ଲାଭ କରୁଛି। ବର୍ତ୍ତମାନ ସୁକିନ୍ଦା ଖଣିରେ ଟିସ୍କୋ ପୂର୍ବରୁ କାର୍ଯ୍ୟରତ ଥିବା ୧୦,୦୦୦ରୁ ଊର୍ଦ୍ଧ୍ୱ ଖଣି ଶ୍ରମିକଙ୍କୁ ଛଟେଇ କରି ପ୍ରତିଦିନ ୧ ଲକ୍ଷ ୨୦ ହଜାର ଶ୍ରମିକଙ୍କ କାମକୁ ମାଟି ଖୋଳା ମେସିନ୍ ସାହାଯ୍ୟରେ କରୁଛି। ମାତ୍ର ସେଠାରେ ବର୍ତ୍ତମାନ ୪୦୦ କର୍ମଚାରୀ ଶ୍ରମିକ କାର୍ଯ୍ୟ କରୁଛନ୍ତି। ସୁପ୍ରିମକୋର୍ଟର ନିର୍ଦ୍ଦେଶ ଅନୁଯାୟୀ ଯେ କୌଣସି ଖଣିକୁ ପୁନଃ ନବୀକରଣ କରିବାକୁ ହେଲେ ଲିଜ ପଟ୍ଟା ନିଆଗଲେ ଖଣି ପଟ୍ଟାଧାରୀମାନଙ୍କୁ ଏକ କ୍ରୋମଭିତ୍ତିକ କାରଖାନା କରିବାକୁ ପଡ଼ିବ। ଟିସ୍କୋ ସୁକିନ୍ଦା କ୍ରୋମାଇଟ ଖଣି ପଟ୍ଟା ନବୀକରଣ କରିବାପାଇଁ ଏକ କ୍ରୋମଭିତ୍ତିକ କାରଖାନା କରିବାକୁ ବାଧ୍ୟ ହୋଇଥାନ୍ତା। ଫଳରେ ଆଉ ଏକ ଚାର୍ଜକ୍ରୋମ କାରଖାନା ହୋଇଥିଲେ ବହୁ ଲୋକ କାମ ପାଇଥାନ୍ତେ। କାରଖାନା ନ କରି ଟିସ୍କୋ ରାଜ୍ୟ ସରକାରଙ୍କୁ ବଶ କରି ଅତ୍ୟନ୍ତ ଶସ୍ତାରେ ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନାକୁ ମାଡ଼ିବସିଛି।

ସେହି ଅପମାନଜନକ ସର୍ତ୍ତରେ ଉଲ୍ଲେଖ ଅଛି ଯେ, ସୁକିନ୍ଦା କ୍ରୋମାଇଟ ଖଣିରୁ ମାଟି ଖୋଳି କ୍ରୋମାଇଟ ବାହାର କରାହେବା ଖୋଳା ମାଟିଗୁଡ଼ିକ ପାହାଡ଼ କରି ଜମା କରିବାପାଇଁ ୩୧୬୬ ଏକର ଜମି ସୁକିନ୍ଦାରେ ଟିସ୍କୋକୁ ଦିଆଯିବ। ଏଠାରେ ଉଲ୍ଲେଖଯୋଗ୍ୟ ଯେ ଟିସ୍କୋ ସୁକିନ୍ଦାରେ ବିସ୍ତୃତ ଜଙ୍ଗଲ ଅଂଚଳର ଧ୍ୱଂସ କରି ପ୍ରାୟ ୨୦ଟି ବିରାଟକାୟ ମାଟିର ପାହାଡ଼ ସୃଷ୍ଟି କରିଛି, ଯେଉଁଠାରେ ଗୋଟିଏ ଦୁବଘାସଟିଏ ମଧ୍ୟ ଉଠୁନାହିଁ। ପୁନଶ୍ଚ ଜଙ୍ଗଲ ନଷ୍ଟ କରି ଆଉ କେତୋଟି ମାଟିର ପାହାଡ଼ ସୃଷ୍ଟି କରିବ। ଏହାଦ୍ୱାରା ପରିବେଶ ପ୍ରଦୂଷଣ ହେବା ସହିତ ଟିସ୍କୋ ଖଣିରୁ ନିର୍ଗତ ହେଉଥିବା କ୍ରୋମାଇଟ ମିଶ୍ରିତ ପାଣିଗୁଡ଼ିକ ନିକଟସ୍ଥ ଦମଶାଳା ନଦୀରେ ଛଡ଼ାଯାଉଥିବାରୁ ସୁକିନ୍ଦା, ଦୁବନ, ଡାମାଣ୍ଡଳର ଅଂଚଳର ଚାଷ ଜମିରେ ଫସଲ ଉପୁଜିବା ଶକ୍ତି ନଷ୍ଟ ହେଉଛି। ଏଥିପ୍ରତି ସରକାରଙ୍କର କୌଣସି ଦୃଷ୍ଟି ନାହିଁ। ଟିସ୍କୋ କିଣିଥିବା ବ୍ରାହ୍ମଣୀପାଳ ଚାର୍ଜକ୍ରୋମ ପାଖକୁ ୩୩ ମେଗାୱାଟ ବିଦ୍ୟୁତଶକ୍ତି ଅନବରତଭାବେ ଯୋଗାଇ ଦିଆଯିବ ବୋଲି ମଧ୍ୟ ସର୍ତ୍ତ ରଖାଯାଇଛି।

ପୁନଶ୍ଚ ୨୫୦ କୋଟିରୁ ଊର୍ଦ୍ଧ୍ୱ ଟଙ୍କାର କାରଖାନାକୁ ଟାଟା କମ୍ପାନୀକୁ ମାତ୍ର ୧୩୪ କୋଟି ୮୦ ଲକ୍ଷ ଟଙ୍କାରେ ବିକ୍ରି କରିଦିଆଗଲା। ଏହି ବିକ୍ରି ଟଙ୍କାରୁ ୮୨ କୋଟି ୧୬ ଲକ୍ଷ ଟଙ୍କା ଟିସ୍କୋ ବିଦେଶୀ ଓ ଦେଶୀ ବ୍ୟାଙ୍କକୁ ପରିଶୋଧ କରିବ। ବାକି ୫୨ କୋଟି ୬୩ ଲକ୍ଷ ଟଙ୍କା ପାଇବା ରାଜ୍ୟ ସରକାରଙ୍କ ଓଡ଼ିଶା ଖଣି ନିଗମ କାରଖାନା, କୋଠାବାଡ଼ି, ଜମି ବାବଦ ପ୍ରାପ୍ୟ, ତାହାକୁ ୨୦୦୬ ମସିହା ସୁଦ୍ଧା ବିନା ସୁଧରେ ୧୫ଟି କିସ୍ତିରେ ପାଇବ। ଏହି ବିକ୍ରି କିଣା କାରବାରରେ ଓଡ଼ିଶା ରାଜକୋଷର କ୍ଷତି ନିମ୍ନଲିଖିତ ଆକାରରେ ହେବ।

୧୧୫ କୋଟି ଟଙ୍କା କମ୍‌ରେ କାରଖାନା ବିକ୍ରି ହେଲା। ୫୨ କୋଟି ୬୩ ଲକ୍ଷ ଟଙ୍କାର ୧୫ ବର୍ଷରେ ୧୫ଟି କିସ୍ତିରେ ଉଧାର ଦିଆଯିବ ଫଳରେ ପ୍ରାୟ ୮୦ କୋଟି ଟଙ୍କା ସୁଧ ବାବଦ ମିଳିବ ନାହିଁ। ପୁନଶ୍ଚ ପରିଶୋଧିତ ୨୧ କୋଟି ଟଙ୍କାର ଜଟିଳ ସମ୍ପତ୍ତିକୁ ମଜୁରା କରାଯାଇନାହିଁ। ବର୍ତ୍ତମାନ ସୁଦ୍ଧା ଏହି ବିକ୍ରି କାରବାରରେ ୧୧୫ କୋଟି ଟଙ୍କା+ ୮୦ କୋଟି ଟଙ୍କା+ ୨୧ କୋଟି ଟଙ୍କା= ୨୧୬ କୋଟି ଟଙ୍କା ଓଡ଼ିଶା ରାଜକୋଷ ହରାଇଲା।

ଭବିଷ୍ୟତରେ ଓଡ଼ିଶା ରାଜକୋଷକୁ ରାଜ୍ୟ ସରକାର ଏବଂ ଖଣି ନିଗମକୁ କୋଟିକୋଟି ବାବଦ ବହୁ ଟଙ୍କା ଦେବାକୁ ପଡ଼ିପାରେ।

ଓଡ଼ିଶା ଖଣି ନିଗମ ସହ ଜର୍ମାନର କ୍ଲୋକନର ଆଣ୍ଡ କମ୍ପାନୀର ଚାର୍ଜକ୍ରୋମ ରପ୍ତାନି କରିବା ଚୁକ୍ତିନାମା ହୋଇଥିଲା ଯେ ୧୯୮୫ ମସିହା ଏପ୍ରିଲ ମାସଠାରୁ ୧୯୯୦ ମସିହା ଏପ୍ରିଲ ମାସ ମଧ୍ୟରେ ୨ ଲକ୍ଷ ୫୦ ହଜାର ମେଟ୍ରିକ ଟନ୍ ଚାର୍ଜକ୍ରୋମ ଓଡ଼ିଶା ଖଣି ନିଗମ କ୍ଲୋକନର କମ୍ପାନୀକୁ ଯୋଗାଇବ। ଚୁକ୍ତିନାମା ଅନୁଯାୟୀ ଏହି ୫ ବର୍ଷ ମଧ୍ୟରେ ୧ ଲକ୍ଷ ୫ ହଜାର ୩ ମେଟ୍ରିକ ଟନ୍ ଚାର୍ଜକ୍ରୋମ ଯୋଗାଯାଇଛି। ବାକି ୧ ଲକ୍ଷ ୪୫ ହଜାର ମେଟ୍ରିକ ଟନ୍ ଚାର୍ଜକ୍ରୋମ ଯୋଗାଯାଇନାହିଁ। ଟାଟା ଏହି ଚାର୍ଜକ୍ରୋମ ଯୋଗାଇବାପାଇଁ ମନା କରିଦେଇଛି। କମ୍ପାନୀ କେବଳ ତାର କମିଶନ ବାବଦ ୨୨ କୋଟି ଟଙ୍କା ପାଇବ। ସେହି କମ୍ପାନୀ ବ୍ୟାଙ୍କ ଅଫ୍ କମର୍ସ, ଲଣ୍ଡନ କୋର୍ଟରେ କେସ୍ କରି ଓଡ଼ିଶା ଖଣି ନିଗମ ଉପରେ ଏହି ଟଙ୍କା ଆଦାୟ କରିବାକୁ ସକ୍ଷମ ହୋଇପାରେ।

କାହିଁକି ଏହି ବିକାକିଣା କାରବାର ବେଆଇନ ଏବଂ ଅନ୍ୟାୟ!

(୧) ଚାର୍ଜକ୍ରୋମ କାରଖାନା ବିକ୍ରି ପାଇଁ ଦେଶ ଓ ବିଦେଶରେ ଟେଣ୍ଡର କରାଯାଇନାହିଁ। ଏଠାରେ ଉଲ୍ଲେଖଯୋଗ୍ୟ ଯେ ଦୁଇଟି ଯଦି ରାଜ୍ୟ ସରକାରଙ୍କର ଲୋକସାନ ଦେଉଥିବା ଶିଳ୍ପ ବିକ୍ରି କରିବାକୁ ହୁଏ, ତାହାହେଲେ ଟେଣ୍ଡର କରାଯାଇ ନିଲାମ କରାଯାଇଥାଏ। ଅଥଚ ୨୫୦ କୋଟି ଟଙ୍କାର

(ଅନ୍ୟ ପୃଷ୍ଠା ଦେଖନ୍ତୁ).

ଚାର୍ଜକ୍ରୋମ କାରଖାନା...
(ଅନ୍ୟ ପୃଷ୍ଠାର ଅବଶିଷ୍ଟାଂଶ)

କାରଖାନାକୁ ବିନା ଟେଣ୍ଡରରେ ବିକ୍ରି କରାଗଲା କାହିଁକି। ଏଥିରେ କେତେ କୋଟି ଟଙ୍କା ଲାଞ୍ଚ ନିଆଯାଇଛି? ପୁନଶ୍ଚ ଶିଳ୍ପପତି ଶ୍ରୀ ବଂଶୀଧର ପଣ୍ଡାଙ୍କ 'ଇମ୍ଫା' କମ୍ପାନୀ ଏହି ଚାର୍ଜକ୍ରୋମ କାରଖାନା କିଣିବାପାଇଁ ଚାହିଁଥିଲେ ମଧ୍ୟ ତାଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରାଯାଇଛି।

(୨) ବ୍ରାହ୍ମଣୀପାଳ ଚାର୍ଜକ୍ରୋମ କାରଖାନାର ପ୍ରକୃତ ମୂଲ୍ୟାୟନ ହୋଇନାହିଁ। କେବଳ ଗୋଟିଏ ଫାର୍ମ ମେସର୍ସ ଡି.ସି.ଆର, କଲିକତାକୁ କାରଖାନା ମୂଲ୍ୟାୟନ କରିବାକୁ ଦିଆଯାଇଥିଲା। ମୂଲ୍ୟାୟନ କରିବାପାଇଁ ଅତି କମ୍‌ରେ ୩ଟି ଫାର୍ମକୁ ଦିଆଯାଇଥିଲେ ବାସ୍ତବ ମୂଲ୍ୟାୟନ କେତେ ଟଙ୍କାରେ ଜଣାପଡ଼ିଥାନ୍ତା। ବିଶେଷ ମଧ୍ୟ କଲିକତାର ମେସର୍ସ ଡି.ସି.ଆର ଫାର୍ମକୁ ନିଜ ମତରେ କାରଖାନାକୁ କମ୍ ଦାମରେ ମୂଲ୍ୟାୟନ କରିବାପାଇଁ ପ୍ରଭାବିତ କରିବା ଅସମ୍ଭବ ନୁହେଁ।

(୩) ମୁଖ୍ୟମନ୍ତ୍ରୀ, ଅର୍ଥମନ୍ତ୍ରୀ ଓ ଋଷିମୋଦୀଙ୍କ ଦସ୍ତଖତରେ ହୋଇଥିବା ବିକ୍ରି ଦଲିଲ ପତ୍ର ବେଆଇନ। କାରଣ ତା ୨୨.୭.୯୧ରିଖରେ ହୋଇଥିବା ବିକ୍ରି ଚୁକ୍ତିନାମା ବେଳେ ଚାର୍ଜକ୍ରୋମ କାରଖାନାର ସମ୍ପୂର୍ଣ୍ଣ ମାଲିକ ସେତେବେଳେ ରାଜ୍ୟ ସରକାର ନଥିଲେ। ଏହା ଘାଲମେଲ ହୁଏ।

ଏହି ସମସ୍ତ ବିଷୟକୁ ଆଖି ଆଗରେ ରଖି ବିଚାର କଲାବେଳେ ଓଡ଼ିଶାର 'ସ୍ୱାଭିମାନ ଓ ଅର୍ଥନୀତି'କୁ ମୁଖ୍ୟମନ୍ତ୍ରୀ ବିଜୁବାବୁ ଓ ତାଙ୍କର ଜନତାଦଳ ସରକାର ଧ୍ୱଂସମୁଖକୁ ଠେଲି ଦେଉଛନ୍ତି। ଭବିଷ୍ୟତରେ ଓଡ଼ିଶାର ଦରିଦ୍ର ଜନସାଧାରଣଙ୍କୁ ଏହି ମହାପାପର ପ୍ରାୟଶ୍ଚିତ କରିବାକୁ ପଡ଼ିବ।

କୋରାପୁଟରେ ହଜାର ହଜାର ଲୋକ ଅନାହାରରେ ମରୁଥିବାବେଳେ, ବନ୍ୟା ପ୍ରପୀଡ଼ିତ ଚାଷୀମାନେ କାନ୍ଦୁଥିବାବେଳେ, ଓଡ଼ିଶାର ଲକ୍ଷ ଲକ୍ଷ ଯୁବକ ଯୁବତୀମାନେ ବେକାରୀର ତାଡ଼ନାରେ ହନ୍ତସନ୍ତ ହେଉଥିବାବେଳେ ବିଜୁ ବାବୁ ଓ ତାଙ୍କ ସରକାର ମହା ଦୁର୍ନୀତିରେ ବୁଡ଼ି ରହିଛନ୍ତି। ଏହି ବେଆଇନ ଚୁକ୍ତିନାମାକୁ ବାତିଲ କରି ଚାର୍ଜକ୍ରୋମ କାରଖାନାକୁ ପୁନଶ୍ଚ ସରକାରୀ ନିୟନ୍ତ୍ରଣାଧୀନକୁ ଅଣାଯାଇ ପରିଚାଳନାର ସୁବନ୍ଦୋବସ୍ତ କରାଯାଉ। ଏହି କାରଖାନା ବିକ୍ରି ଖରିଦ ଦୁର୍ନୀତିର ଉଚ୍ଚସ୍ତରୀୟ ତଦନ୍ତ କମିଶନ ବସାଇ ଦୋଷୀମାନଙ୍କୁ ଦୃଷ୍ଟାନ୍ତମୂଳକ ଶାସ୍ତି ଦିଆଯାଉ।

# ଚାର୍ଜକ୍ରୋମ କାରଖାନା ବିକ୍ରୀ ସମ୍ପର୍କରେ
# ଶ୍ରୀ ମନମୋହନ ଚୌଧୁରୀଙ୍କ ମତାମତ

କଟକ, ତା ୧।୧୦- ଚାର୍ଜକ୍ରୋମ କାରଖାନା ବିକ୍ରୀ ସଂକ୍ରାନ୍ତରେ ଶ୍ରୀ ମନମୋହନ ଚୌଧୁରୀ ନିଜର ମତାମତ ଦେଇ ଲେଖିଛନ୍ତି ଯେ ଓଡ଼ିଶା ସରକାର ତାଙ୍କର ଚାର୍ଜକ୍ରୋମ କାରଖାନାକୁ ଟାଟା କମ୍ପାନୀକୁ ବିକିଦେବାର ଖବର ବାହାରିଛି । ଗୋଟିଏ ସମୟରେ ସରକାରୀ ତତ୍ତ୍ୱାବଧାନରେ ଶିଳ୍ପ କାରଖାନାଗୁଡ଼ିକ ଚାଲୁକରିବାର ଧୂମ ଉଠିଥିଲା । ଏବେ ବିଶ୍ୱ ବ୍ୟାଙ୍କ ଓ ଆନ୍ତଃରାଷ୍ଟ୍ରୀୟ ମୁଦ୍ରାପାଣ୍ଠିର ହୁକୁମରେ ସେ ଧାରା ବଦଳିଛି । ସରକାରୀ ଶିଳ୍ପଗୁଡ଼ିକ ବ୍ୟକ୍ତିଗତ ପୁଞ୍ଜିବାଦୀ ସଂସ୍ଥାଗୁଡ଼ିକୁ ବିକିଦେବାର ମସୁଧା ସାରା ଭାରତରେ ଚାଲିଛି । ସରକାରୀ ଶିଳ୍ପଗୁଡ଼ିକରେ ଅପାରଗତା, କୁପରିଚାଳନା, ପ୍ରିୟପାତ୍ର ତୋଷଣ, ଦୁର୍ନୀତି ଆଦି ଯୋଗୁଁ ପ୍ରଚୁର କ୍ଷତି ହୁଏ ଓ ତାହା ସବୁ କରଦାତାଙ୍କ ମୁଣ୍ଡରେ ଲଦାହୁଏ । ସେଥିପାଇଁ ସେସବୁର ପୁନର୍ନ୍ୟାସ ବିଷୟରେ ଚିନ୍ତା କରିବାର ଆବଶ୍ୟକତା ଅନେକଦିନୁ ଜଣାପଡ଼ିଲାଣି । ଯେଉଁ ସବୁ ଲକ୍ଷ୍ୟକୁ ଆଖିଆଗରେ ରଖି ଏସବୁ ଶିଳ୍ପ ସ୍ଥାପିତ ହୋଇଥିଲା, ସେ ସବୁର ଭବିଷ୍ୟତ କଣ ହେବ, ସେ ବିଷୟରେ ସର୍ବସାଧାରଣରେ ବିଚାର ଆଲୋଚନା କରାଯିବା ସର୍ବାଦୌ ଆବଶ୍ୟକ ଥିଲା ; ମାତ୍ର ତାହା ନ କରି [illegible] ଭାବେ ଏଭଳି ବିକ୍ରୀରେ ଏକପ୍ରକାରର ଦାୟିତ୍ୱହୀନତା ପ୍ରକାଶ ପାଉଛି ।

ଏକ ସମବାୟ ଚିନିକାରଖାନାକୁ ରାଜ୍ୟ ସରକାର ମଧ୍ୟ ବିକିଦେବାର କଥା ଶୁଣାଯାଉଛି । ସମବାୟ ସମିତି ସରକାରଙ୍କ ହସ୍ତମୁଠି ବିଭାଗ ନୁହେଁ । ଏହା ଅଂଶୀଦାରଙ୍କର ଏକ ମିଳିତ ସଂସ୍ଥା । ଏହାର ମାଲିକାନାରେ ଥିବା କାରଖାନାକୁ ସରକାର କିପରି ବିକିଦେବେ ବୁଝାପଡୁ ନାହିଁ । ତିରିଶବର୍ଷ ତଳେ, କଂଗ୍ରେସ ଶାସନ ଅମଳରେ, ଏକ ଚିନିକଳ ପ୍ରତିଷ୍ଠାର ସୁବିଧା କରିଦେବାପାଇଁ ଏକ ଗୁଚ୍ଛ ଉତ୍ପାଦକଙ୍କର ସମବାୟ ସମିତିକୁ ସରକାର ଜବରଦସ୍ତ ଛାଡ଼ି ଦେଇଥିଲେ । ଏବେ ଦେଖାଯାଉଛି ଯେ ଜନତା ସରକାର ଅମଳରେ ମଧ୍ୟ ସେହି ଢଙ୍ଗ କାଏମ ରହିଛି । ଶାସନର ଚରିତ୍ର ଆଦୌ ବଦଳି ନାହିଁ ।

ତାପରେ ରାଜ୍ୟ ସରକାର ଗୋଟିଏ ବ୍ୟକ୍ତିଗତ ମାଲିକାନାରେ ଥିବା ସଂସ୍ଥା ନୁହେଁ । ଚାର୍ଜକ୍ରୋମ କାରଖାନା ଓଡ଼ିଶାର ଜନସାଧାରଣଙ୍କର ସମ୍ପତ୍ତି । ଏହାକୁ ବିକିଦେବା ବିଷୟରେ ଜନସାଧାରଣଙ୍କର ସ୍ୱାର୍ଥଦୃଷ୍ଟିରୁ ଦୁଇଟି ପ୍ରଶ୍ନ ଉଠୁଛି—ପ୍ରଥମତଃ, ଏହା ବିକ୍ରୀ ହେବ ବୋଲି କୌଣସି ସାଧାରଣ ସୂଚନା ଦିଆଯାଇ ଆବେଦନ ମଗାହୋଇଥିଲା କି? ଟାଟା ଭଳି ଏକ ବିରାଟ କମ୍ପାନୀକୁ ଏହା ବିକି ତାର ଶକ୍ତି ବଢ଼ାଇବା ପରିବର୍ତ୍ତେ ଏହା କୌଣସି ସାନ କମ୍ପାନୀକୁ ବିକାଯାଇପାରିଥାନ୍ତା । ଓଡ଼ିଶାରେ ଟାଟା କମ୍ପାନୀର ରାଜତ୍ୱ ବିସ୍ତାର ଚାଲିଛି । ଶହ ଶହ କେଉଟଙ୍କ ଜୀବିକା ଛଡ଼ାଇ ଏ କମ୍ପାନୀକୁ ଚିଲିକାରେ ଚିଙ୍ଗୁଡ଼ି ଚାଷପାଇଁ ପଟା ଦିଆହେଲା । ଏବେ ଚାର୍ଜକ୍ରୋମ ଦିଆହେଉ । ଖଣି ପଟା ମଧ୍ୟ ତାଙ୍କୁ । ଭବିଷ୍ୟତ ଗର୍ଭରେ ଆଉ କଣ ଅଛି ଦେଖାଯାଉ ! ଦ୍ୱିତୀୟତଃ, କାରଖାନାର ମୂଲ୍ୟ ନିର୍ଦ୍ଧାରଣ କିପରି ହେଲା ? ବାଲାନ୍ସସିଟରେ ଯାହାଥାଏ ତାହାଠାରୁ ପ୍ରକୃତ ମୂଲ୍ୟ ସାଧାରଣତଃ ଅଧିକ । ଡିପ୍ରିସିଏସନକୁ ବାଦ ଦେଲେ ମଧ୍ୟ ଦରଦାମ ବୃଦ୍ଧିଯୋଗୁଁ ଯନ୍ତ୍ରପାତିର ମୂଲ୍ୟ କାର୍ଯ୍ୟତଃ ବଢୁଛି । ଏହାଛଡ଼ା କମ୍ପାନୀର ସୁନାମର ମଧ୍ୟ ଗୋଟିଏ ମୂଲ୍ୟ ଥାଏ । ଏହି କାରଖାନାର ମୂଲ୍ୟ ନିରୂପଣ କୌଣସି ଉପଯୁକ୍ତ ସମର୍ଥ ଏଜେନ୍ସିଦ୍ୱାରା କରାଯିବା ଆବଶ୍ୟକ ଥିଲା । ଏହି ମୂଲ୍ୟ କିପରିଭାବରେ ନିରୂପିତ ହେଲା, ତାହା ଉକ୍ତ କାରଖାନାର ମାଲିକଭାବରେ ଓଡ଼ିଶାର ଜନସାଧାରଣଙ୍କର ଜାଣିବାର ଅଧିକାର ଅଛି ।

ଏହାଛଡ଼ା ଟାଟା କମ୍ପାନୀ ମୂଲ୍ୟ ବାବଦକୁ ୫୨ କୋଟି ୭୩ ଲକ୍ଷ ଟଙ୍କା ପନ୍ଦର ବର୍ଷରେ ଶୁଝିବା ଅତି ହାସ୍ୟାସ୍ପଦ କଥା । ଏହି ଟଙ୍କା ଉପରେ ସୁଧତ ପନ୍ଦରବର୍ଷରେ ୭୫ କୋଟି ଟଙ୍କାକୁ ଟପିଯିବ । ଏସମସ୍ତ ବିଷୟରେ ଟିକନିଖି ବିବରଣୀ ଓଡ଼ିଶା ସରକାର ସର୍ବସାଧାରଣରେ ପ୍ରକାଶ କରନ୍ତୁ ।

PRIVATIZATION BID

Statesman 9/10/91

# Biju Patnaik faces severe criticism

**From Our Staff Correspondent**

**BHUBANESWAR, Oct. 8. — The Orissa Chief Minister, Mr Biju Patnaik, has come under severe attack from Opposition political parties, for what they allege was nothing less than a "selling spree" undertaken by the Chief Minister to dispense with many public sector undertakings.**

The Congress(I) charged him of selling off sugar mills and the charge chrome plant, the BJP has demanded a CBI probe into these "shady deals" and even the Communist allies of the Dal have denounced the State Government for selling the charge chrome plant to big business houses.

The Pradesh Working Committee adopted a resolution condemning such sale while the BJP leader, Mr Bansilal Soni, at a Press conference here yesterday alleged that Mr Patnaik had "given a holiday to all the known systems and decorum of public behaviour. He cares two hoots for public opinion, Press reports and political parties". Mr Soni lamented that no tender had been floated before the plants were handed over to private houses. He reaffirmed that the BJP was not against privatization but the manner in which these units were being sold, keeping everyone in the dark amounted to insulting the public opinion.

Such a secretive attempt aroused suspicion of some underhand deal, he alleged.

At a separate Press conference on Sunday, Mr Mayadhar Nayak, secretary UTUC (Lenin Sarani) State Committee, charged that a "shady deal had been struck with the Tatas sacrificing Rs 115 crores" with regards to the sale of the charge chrome plant at Brahmanipal. Mr Nayak stated that besides this, the Government had given lease to the Tatas for prawn cultivation in the Chilka area. Listing other privatization plans of the Government, Mr Nayak alleged three cooperative sugar mills had already been "gifted" to private firms of South India. The Thapa group of industries was also trying to expand its activity and the Government intended to lease out the Titagarh Paper Mill, he alleged. Similarly, the State Janata Dal Government had shown favours in the form of exemptions to the IMFA group and the Chief Minister was trying to sell out the public sector Konark Jute Mill to the Calcutta based Champadani Industries, said Mr Nayak.

The two major Left parties in the State, the CPI and the CPI(M), have also issued statements denouncing the privatization that was taking place.

Many ruling party MLAs and Ministers are against the sale of certain plants and have drawn the attention of the Chief Minister that politically they were losing ground by such sale proceedings. The Chief Minister, however, has stood firm in his stand that he would not tolerate any loss-making undertaking, as he felt it was criminal to run such corporations when hundreds of people were suffering in the tribal districts for want of better infrastructural facilities in the field of health and education. Strangely, although a lot of allegations have been levelled with regards to the different sales, particularly that of the charge chrome plant, most of them lack statistical details or concrete suggestions of revival of the units. For instance, the Chief Minister has long been saying that the charge chrome plant was incurring a loss of more than Rs 1 crore per month and its total liability ran up to Rs 135 crores, but this is yet to be disproved by those levelling the charges. Apart from this, it has been stated that at its very inception, many financial institutions and high level committees had expressed their reluctance to approve of the project as they considered it to be unviable. But their disapproval is not being countered by facts or suggestions on how it could be made viable in the public sector.

The Centre is considering reviving sick public sector fertilizer plants and there is no proposal to hand them over to the private sector, the Union Minister of State for Chemical and Fertilizer, Mr Chinta Mohan, said here on Sunday.

Asked about privatization of fertilizer plants at a Press conference here, he said there was no such proposal.

Mr Chinta Mohan said almost all coal-based fertilizer companies were running at a loss as the latest technology involved gas-based units. He said the Centre planned to set up two plants in the Godavari Krishna Basin and one in the Cauvery Basin, all of which were gas-based medium plants.

# Govt's deal with TISCO takes new turn

EXPRESS NEWS SERVICE

BHUBANESWAR – The Orissa Government's controversial deal with the Tata Iron and Steel Company (TISCO) over the selling of the State-owned charge chrome plant has assumed a new dimension following the steel and mines department's refusal to part with the deal documents to the Public Accounts Committee (PAC) of the State Assembly.

The refusal is surprising in the context of Chief Minister Biju Patnaik's categorical assertion in the Assembly last week that there was no hanky panky in the deal which was "executed in the interest of the State". If the deal was clean why is the department then shying away from allowing another official body to scrutinise the papers? a committee member asked.

In response to a letter of the PAC to provide all the papers relating to the deal with the TISCO, the department has replied that it could not oblige the PAC in public interest. The PAC, it is understood, has not only conveyed its displeasure to the department, but has also shot off an angry letter, demanding the Steel Minister (Chief Minister), in accordance with the rules, to certify that the relevant documents could not be revealed in public interest. The reply to the second letter is awaited.

It was, perhaps, this fact that emboldened the Congress-I legislator and former minister, Mr Basant Kumar Biswal, to take up the cudgels against the State Government last week. He had moved a statutory resolution in the Assembly demanding a threadbare discussion on the decision of the State Government to sell the charge chrome plant to the Tatas. Mr Biswal not only lambasted the State Government action and alleged many "irregularities", but also dared the Chief Minister to institute a judicial probe into the affairs of the unit from its very planning stage.

Mr Biju Patnaik, however, maintained a very defensive posture while replying to the discussion and said he was not a "drain inspector" to go into the background of the plant and rake up who was behind its sustained loss. He was sorry for not having taken any member of the Opposition into confidence while executing the deal with the Tatas and promised to consult the Opposition in all future transactions to privatise any State units.

Mr Biswal also challenged the State Government as to how it could sign the memorandum of understanding with TISCO when it was not the legal owner of the charge chrome plant. Though it promulgated an ordinance vesting the property with the State Government months after the MoU was signed, the bill was yet to be brought in, he complained. It was not even introduced in the brief winter session which saw the passage of 10 bills.

He held that had the State Government allowed the Orissa Mining Corporation to run the charge chrome plant with the facilities it had granted to the Tatas, the unit could have shown profit.

Though the Chief Minister has been stoutly defending his decision to sell the unit to the Tatas, the issue appears to be worrying him a great deal in the face of severe and sustained criticism from various sections. So worried was Mr Patnaik when Mr Biswal attempted to move the statutory resolution in the House that the former had reportedly asked another senior Congress-I legislator and former minister, Mr Raghunath Patnaik, to persuade his colleague to withdraw it.

There has been a systematic campaign by the ruling party to entangle Mr Biswal with the sickness of the charge chrome plant for, it was during his ministership the plant was set up. But, Mr Biswal stuck to his point and openly dared the Government to prove his involvement and said he was ready for any punishment.

# Don't sell away to Tatas, govt warned

CUTTACK, Aug. 6 (PTI): General secretary of Orissa unit of the United Trade Union Central (Lenin Sarani), Mayedhar Nayak today urged the state government to desist from negotiating with the Tatas for the sale of the public sector charge chorme unit at Brahmanipal.

Alleging that the current negotiaions with the Tatas would hamper the interest of the state, Nayak in a press statement said today that the state government was trying to privatise 'profit-making public sector units' to cover up political interference, bureaucratic inefficiency and high level corruption in these units

Nayak, who is also a prominent SUCI leader of the state, said while Tatas earned about Rs400 corore from the chromite mines leased out to them in the Sukinda mines belt, they had introduced mechanisation in the mines employing hardly 400 workers. Without mechanisation the mines could employ about 1.20 lakh workers, he claimed.

The SUCI leader alleged that current negotiations with the Tatas for the sale of the public sector unit was aimed at bailing out the industrial house, who were required to set up a charge chrome unit in the state by next year as per a supreme court directive in order to enable them to renew their lease of charomite mines due in 1992.

Nayak said the state chief minister who often complained of resources constraint for setting up industries, had made the state a grazing ground for industrial houses from outside the state. The Tatas had already been given lease of 6000 acres for prawn cultivation in the Chilika lake, he said.

Unless the state government cancelled the lease given to the Tatas and desisted from attempts to sell the Brahmanipal charge chrome unit, the people of Keonjhar and Sukinda areas would be forced to resort to agitations, he warned.

Statesman 1/10/91

# Protest against sale of charge chrome plant

CUTTACK, Sept. 30 — Mr Mayadhar Nayak, convener of the United Trade Union Centre (Lenin Sarani) Orissa unit, today threatened to launch an agitation from tomorrow to protest against the State Goverment's decision to sell the Brahmanipal charge chrome plant to the Tatas, reports UNI

In a statement here, Mr Nayak, who is also the president of the chrome plant's workers union, alleged that the sale of the only public sector charge chrome plant to the Tatas at a rate below 30 per cent of its estimated market value had raised "suspicion".

The Socialist Units Centre of India leader called upon the workers to build up a mass movement forcing the 'State Government to cancel the "shady deal" He said members of the SUCI and UTUC would stage a demonstration, protest rally and jail bharo movement from tomorrow against the "anti-people" policy of the Biju Patnaik Government in handing over public sector plants to monopoly and big business houses

Mr Naik criticized the State Government for promulgating prohibitory orders under Section 144 CrPC in and around the plant area in Sukinda to thwart any public meeting and protest against the selling of the plant.

The current negotiation with the Tatas was a help to cover up "political interference, bureaucratic inefficiency, corruption and to gain political dividends", he said and added that the Minister who had differences with the Chief Minister on the selling of the plant should resign from the Government

# Orissa labour leader's call to launch stir

CUTTACK, Sept 29: The SUCU leader and president of Brahmanipal Charge Chrome Workers' Union Mr Mayadhar Nayak, yesterday called upon workers to launch a civil disobedience movement and jail bharo agitation from October 1 to force the Orissa Government to cancel its deal with the Tatas for the sale of other public sector Brahmanipal Charge Chrome plant at a cost of Rs 135 crores, reports PTI

In a Press statement, Mr Nayak criticised the imposition of prohibitory orders on the plant area, which he alleged curtailed the democratic rights of the plant workers who faced retrenchment.

Statesman 30.9

# Plant sale may land Biju in deep trouble

By Upendra Sabat

Bhubaneswar, Oct 9 — The recent plant sale may prove just another Bofors for State Chief Minister It is hotly debated in Orissa now whether Orissa Chief Minister Biju Patnaik could keep his 'Mr Clean' image unsolled in his second tenure as the state's Chief Minister

At least for once the saying that 'absolute power corrupts one absolutely' seems to be gaining ground with Mr Patnaik Opposition politicians in general, dissidents within the ruling Janata Dal and particularly United Trade Union Centre (Lenin Sarani) secretary Mr Mayadhar Naya are saying so

What has actually inspired such romours to roll out out against Mr Patnaik is the way Chief Minister going about privatisation One after another industry is being sold to private parties who donot belong to the State The leader who takes prides in the achievements of Oriya Puas (sons of Orisa) now appears presiding over the 'total saleout' to non-Oriya Industrialist

Giving an example, Mr Nayak said that the Bamanipal Charge Chrome Plant, the only 100 per cent export oriented public sector unit of Rs 250 crores worth was being given to Tatas at Rs.135 crores, that too payable in 15 yearly Instalments The Chief Minister is going ahead depite all opposition from all quarters inclduing that from his own Cabinet members

Mr Nayak alleges this was become possible as Mr Patnaik wields absolute power and has become assolutely corrupt He claimed at least Rs 115 corres of rupees had changed hands under the table

Former Prime Minister Rajiv Gandhi's Bofors deal had only Rs 64 crores in question This transaction has double of it Mr Nayak says and alleges" this is the Bofors in Orissa".

Within 18 months of Janata Dal rule, the State Government under Biju Patnaik's could not set up" a unit to produce even needless but it has been handing over public sector units to private industrialists, Mr Nayak alleged adding that this was the exact opposite of what the Janata Dal at th National level and the Left parties are demanding from the Congress Government at the Centre

ESTABLISHED 1838

THE TIMES OF INDIA

# 'Sale of Orissa chrome plant motivated'

The Times of India News Service

CUTTACK, October 16: The Socialist Unity Centre of India (SUCI) today demanded a judicial probe into the sale of the public sector chrome plant at Brahmanipal to the Tatas by the state government

In a statement here, a SUCI state secretariat member, Mr Mayadhara Nayak, alleged that the sale was done in an "illegal manner" as the state government had neither called for any global tender nor engaged any expert to determine the present market price of the plant.

He said it was surprising that the chief minister, Mr Biju Patnaik, who was once a bitter critic of the Tatas, could suddenly change his mind and sell the plant at a meagre sum of Rs.135 crore. He alleged that the deal had resulted in a loss of Rs 115 crore to the state exchequer

He said that the state government had to incur an additional loss of about Rs 20 crore as the finished charge chrome and raw material stocked at the plant site were not taken into account at the time of the sale of the unit.

